# ସୂଚୀ

## ପ୍ରଥମ ଖଣ୍ଡ



## ଦ୍ୱିତୀୟ ଖଣ୍ଡ

## ପ୍ରଥମ ଖଣ୍ଡ

# ପୃଥିବୀର ଛାତ

### ତିବ୍‌ବତ ଦେଶର ପିଲା

ଜହ୍ନ ରାତି । କାହ୍ନୁ ତା' ଘର ପଛଆଡ଼ ବଗିଚାରେ ଠିଆହୋଇ ଆକାଶକୁ ଚାହିଁଲା । ଦେଖିଲା ରୁପାଥାଳିଆ ପରି ଗୋଲ ଜହ୍ନଟିଏ ଆକାଶରେ ଶୋଭା ପାଉଛି । କାହ୍ନୁ ଜହ୍ନ ଆଡ଼କୁ ଏକ ଧ୍ୟାନରେ ଅନାଇ ରହିଲା । ତାକୁ ବୋଧ ହେଲା— ସତେ କି ଜହ୍ନ ବି ତାକୁ ଏକ ଦୃଷ୍ଟିରେ ଅନାଇ ରହିଛି । କାହ୍ନୁ ହାତ ଟେକି ଅତି ଶରଧାରେ ଡାକିଲା—



କାହ୍ନୁ ଜହ୍ନମାମୁଁକୁ ହାତ ଟେକି ଡାକୁଛି

"ଆରେ ଜହ୍ନମାମୁ ଶରଦଶଶୀ ।
କାହ୍ନୁ ପାଖେ ବେଗେ ପଡ଼ ତୁ ଖସି ।"

ଭଣଜାର ଡାକ ଶୁଣି ଜହ୍ନମାମୁ ଠେକୁଆ ପିଠିରେ ଚଢ଼ି ଆକାଶ ରାଇଜରୁ ଉଡ଼ି ଆସିଲେ । ଆଖିପିଛୁଳାକେ ଆସି କାହ୍ନୁ ପାଖରେ ଉପସ୍ଥିତ ।

କାହ୍ନୁ— ନମସ୍କାର, ଜହ୍ନମାମୁ ।

ଜହ୍ନମାମୁ— ନମସ୍କାର, ଟିକି ଭଣଜା ! ତୋ ଡାକ ଶୁଣି ଚନ୍ଦ୍ରଲୋକରୁ ଓହ୍ଲାଇ ଆସିଲି । ତୁ ମୋତେ ଡାକିଲୁ କାହିଁକି ?

କାହ୍ନୁ— ତମ ସାଙ୍ଗରେ ଦେଶ ଭ୍ରମଣରେ ବାହାରିବି । ତମେ ମୋ ମନକଥା ଜାଣି ନୂଆ ନୂଆ ଦେଶରେ ବୁଲାଇ ଆଣିବ ।

ଜହ୍ନମାମୁ— ହେଉ, ଭଲ କଥା । ସାଙ୍ଗସାଥୀ ନ ଥିଲେ ଦେଶ ଭ୍ରମଣ ଭଲ ଲାଗେ ନାହିଁ । ତୋ'ପରି ସାନ ପିଲାଟାଏ ବି ଏକୁଟିଆ ଦୂର ଦୂରାନ୍ତର ରାଇଜକୁ ବୁଲିଯିବ କିପରି ?

କାହ୍ନୁ— ସେଥିପାଇଁ ତ ମୁଁ ତମକୁ ଡାକିଲି ।

ଜହ୍ନମାମୁ— ଏ ପୃଥିବୀରେ ଏତେ ଦେଶ ଅଛି ଯେ କେଉଁ ଦେଶକୁ ଆଗ ଯିବା, ଆଉ କେଉଁ ଦେଶକୁ ପଛେ ଯିବା କହିବୁଟି ?

କାହ୍ନୁ— ତମେ ମାମୁ ! ଆକାଶ ରାଇଜରେ ଥାଇ ସବୁ ଦେଶ ଦେଖିପାରୁଛ । କେଉଁ ଦେଶକୁ ଯିବା ତମେ କହିବ । ମୋତେ ପଚାରୁଛ କ'ଣ ?

ଜହ୍ନମାମୁ— ହେଉ, ଚାଲ ଯିବା ଗୋଟାଏ ବିଚିତ୍ର ଦେଶକୁ । ଏ ଦେଶ ତୋ ଦେଶକୁ ଲାଗି ରହିଛି । ମୁଁ ଆକାଶରୁ ତଳକୁ ଅନାଇଲେ ଏ ଦେଶଟା ମୋ ଆଖିରେ ପ୍ରଥମେ ପଡ଼େ । ଏ ଦେଶ ଯେଉଁ ଅଞ୍ଚଳରେ ଅଛି, ସେ ଅଞ୍ଚଳକୁ ପୃଥିବୀର ଛାତ କହନ୍ତି ।

କାହ୍ନୁ— କ'ଣ କହୁଛ ମାମୁ ? ପୃଥିବୀର ଛାତ ! ପୃଥିବୀର ଛାତ ପୁଣି ଆସିଲା କାହୁଁ ? ଘରର ସିନା ଛାତ ଅଛି । ପୃଥିବୀ ଉପରେ ଛାତ କାହିଁ ? ଆକାଶ କ'ଣ ପୃଥିବୀର ଛାତ ?

ଜହ୍ନମାମୁ— ନାହିଁରେ ଟିକି ଭଣଜା ! ନାହିଁ । ଆକାଶ ପରା ଶୂନ୍ୟସ୍ଥାନ । ଏହା ଘରର ଛାତପରି ନିଦା ଜିନିଷ ନୁହେଁ । ତେଣୁ

ଆକାଶକୁ ପୃଥିବୀର ଛାତ କହିଲେ ଭୁଲ୍ ହେବ । ମୁଁ ଯେଉଁ ଅଞ୍ଚଳ କଥା କହୁଛି ସେ ଅଞ୍ଚଳରେ ଦେଖିବୁ ଖାଲି ପର୍ବତ ଆଉ ମାଳଭୂମି । ଏହି ମାଳଭୂମି ଅଞ୍ଚଳ ପୃଥିବୀର ଆଉସବୁ ଅଞ୍ଚଳଠାରୁ ଅଧିକ ଉଚ୍ଚ । ତେଣୁ ଏହି ଅଞ୍ଚଳକୁ ପୃଥିବୀର ଛାତ କହନ୍ତି ।

କାହ୍ନୁ— ତେବେ ଚାଲ ମାମୁ ! ସେହି ଅଞ୍ଚଳକୁ ଯିବା ।




କାହ୍ନୁ ଓ ଜହ୍ନମାମୁ ଉଚ୍ଚା ପାହାଡ଼ ଉପରେ ଉଡ଼ିଯାଉଛନ୍ତି

ଜହ୍ନମାମୁ ଠେକୁଆ ପିଠିରେ ବସିଲେ । କାହ୍ନୁ ଜହ୍ନମାମୁଙ୍କ କୋଳରେ ବସିଲା । ତିନିହେଁ ଉତ୍ତରକୁ ମୁହଁ କରିଥାନ୍ତି । ଜହ୍ନମାମୁ ସଙ୍କେତ ଦେଲେ— ଏକ, ଦୁଇ, ତିନି । ତିନିହେଁ ସାଁ କରି ଆକାଶରେ ଉଡ଼ିଗଲେ । ସିଧା ସଳଖ ଉତ୍ତର ଦିଗକୁ ଯାଇ ଉପରୁ ଦେଖିଲେ ଉଚ୍ଚା ପାହାଡ଼ସବୁ ଆକାଶକୁ ମୁଣ୍ଡ ଟେକିଛନ୍ତି । ସେଗୁଡ଼ିକ ଉପରେ ବରଫ ପଡ଼ି ଧଳା ଦିଶୁଥାଏ ।

ଏଡ଼େ ଉଚ୍ଚ ପର୍ବତ ଶିଖରଗୁଡ଼ାଏ ଦେଖି କାହ୍ନୁ କାବା ହୋଇ ସେଗୁଡ଼ିକୁ ଅନାଇ ରହିଲା । ପର୍ବତ ଶିଖରଗୁଡ଼ିକ ବରଫରେ ଘୋଡ଼େଇ ହୋଇ ଆକାଶରେ ଲୁଚି ଯାଇଛନ୍ତି ।

ଜହ୍ନମାମୁ— କାହ୍ନୁ ! ତୁ ହାଁ କରି ଚାହିଁ ରହିଛୁ କଅଣ ? ଏଗୁଡ଼ିକ ପରା ତିବ୍ବତ ଦେଶର ପାହାଡ଼ ।

କାହ୍ନୁ— ଓଃ, ବାପରେ ବାପ୍ ! ଏ ଦେଶଟା କି ଥଣ୍ଡା ! ଗୋଡ଼ ହାତ କାଲୁଆ ମାରିଯାଉଛି । ଏଠାରେ ଘରଦୁଆର ନାହିଁ କି ଜନମାନବ ନାହାନ୍ତି । ତୁଛାକୁ ସିନା ଏଠିକି ଆସିଲୁଁ ?

ଜହ୍ନମାମୁ— ତୁ କାହ୍ନୁ ଏଡ଼େ ବ୍ୟସ୍ତ ହେଲେ ଚଳିବ ନାହିଁ । ଏଠାରୁ ଟିକିଏ ଆଗକୁ ଉଡ଼ିଗଲେ ଦେଖିବୁ ପାହାଡ଼ିଆ ଟାଙ୍ଗର ଭୂଇଁ ।

କାହ୍ନୁ ଆଉ ଜହ୍ନମାମୁ ଆଉ ଟିକିଏ ଆଗକୁ ଉଡ଼ି ଉଡ଼ି ଗଲେ ।

ଜହ୍ନମାମୁ— ହେଇ କାହ୍ନୁ ଦେଖ, ସେହି ଦୂରରେ ଘର ପରି ଗୋଟାଏ କ'ଣ ଦିଶୁଛି ।

କାହ୍ନୁ— ହଁ, ସତ ତ !



ଲାମାଙ୍କ ମଠ

ଏହି ଘର ପାଖକୁ ଯାଇ ସେମାନେ ଦେଖିଲେ ଯେ ପାହାଡ଼ ଉପରେ ଏ ଗୋଟାଏ ମଠ । ତା' ଉପରେ ଗୋଟାଏ ଚକ ବୁଲୁଛି ।

କାହ୍ନୁ ଓ ଜହ୍ନମାମୁ ଏହି ମଠ ପାଖରେ ଓହ୍ଲାଇଲେ । ଦେଖିଲେ ମଠର ଅଗଣାରେ ଧାଡ଼ିକି ଧାଡ଼ି ରଙ୍ଗିନ ପତାକାସବୁ ଦଉଡ଼ିରେ ବନ୍ଧାହୋଇ ମାଳ ମାଳ ହୋଇ ଝୁଲୁଛି ।

ଜହ୍ନମାମୁ— ବୁଝିଲୁ କାହ୍ନୁ, ଏ ଗୋଟାଏ ବୌଦ୍ଧ ମଠ । ଏହିପରି ଆଉ କେତେ ମଠ ଏ ଦେଶରେ ଅଛି । ଏଠାକାର ଲୋକମାନେ ବୁଦ୍ଧଦେବଙ୍କ ମୂର୍ତ୍ତିକୁ ପୂଜା କରନ୍ତି । ଏହି ମଠମାନଙ୍କରେ ବୌଦ୍ଧ ପୁରୋହିତମାନେ ରହନ୍ତି । ସେମାନଙ୍କୁ ଲାମା କହନ୍ତି ।

ଏତିକିବେଳେ ଦୁଇଜଣ ଲାମା ମଠ ଭିତରୁ ବାହାରି ଆସି କାହ୍ନୁ ଓ ଜହ୍ନମାମୁଙ୍କୁ ଭକ୍ତି ଓ ସମ୍ମାନର ସହିତ ମଠ ଭିତରକୁ ପାଛୋଟି ନେଇଗଲେ ।

କାହ୍ନୁ ଓ ଜହ୍ନମାମୁ ଦେଖିଲେ ମଠର କାନ୍ଥରେ ବୁଦ୍ଧଙ୍କର ଚିତ୍ରସବୁ ଭିନେ ଭିନେ ରଙ୍ଗରେ ଅଙ୍କା ହୋଇଛି । ମଠ ମଝିରେ ବୁଦ୍ଧଙ୍କର ଗୋଟିଏ ଜୀବନ୍ତ ମୂର୍ତ୍ତି ଶୋଭା ପାଉଛି । ମୂର୍ତ୍ତି ଆଗରେ ଘିଅଦୀପ ଜଳୁଛି । ମଠର ଛାତରୁ ରଙ୍ଗିନ୍ ପତାକାସବୁ ଝୁଲୁଛି ।

କାହ୍ନୁ ପଚାରିଲା— ଏ ପତାକାଗୁଡ଼ିକ ଝୁଲୁଛି କାହିଁକି ?

ଜଣେ ଲାମା କହିଲେ— ପତାକା ଦେହରେ ଗୋଟିଏ ଗୋଟିଏ ଧର୍ମବାଣୀ ଲେଖା ହୋଇଛି । ଏଠାକୁ ଯେଉଁ ଯାତ୍ରୀମାନେ ଆସନ୍ତି, ସେମାନେ ଗୋଟିଏ ଗୋଟିଏ ପତାକା ଉପହାର ଦେଇଯାଆନ୍ତି । ଏହି ପତାକାଗୁଡ଼ିକ ପବନରେ ଯେତେଥର ଫର ଫର ହୋଇ ଉଡ଼େ, ସେତେଥର ବୁଦ୍ଧଦେବଙ୍କୁ ପ୍ରାର୍ଥନା କରାଗଲା ବୋଲି ଆମେ ଜାଣୁ ।

ଜହ୍ନମାମୁ— ତମର ଏହି ମଠ ଉପରେ ଚକ୍ର ପରି ଯେଉଁ ଜିନିଷଗୁଡ଼ିକ ଘୂରୁଛି, ସେଗୁଡ଼ିକ କଅଣ ?

ଲାମା— ସେଗୁଡ଼ିକୁ ଆମେ ଧର୍ମଚକ୍ର କହୁଁ । ମଠ ଉପରେ ଏହି ଚକ୍ର ପବନରେ ଘୂରୁଛି । ଆମର ଧର୍ମବାଣୀ ହେଉଛି, "ଓଁ ମଣିପଦ୍ମେ ଓଁ" । ଏହି ଧର୍ମବାଣୀ ଲମ୍ବା କାଗଜଖଣ୍ଡମାନଙ୍କରେ ଲେଖାହୋଇ ଧର୍ମଚକ୍ରରେ ରଖାହୋଇଥାଏ । ଚକ୍ରଟି ବାମରୁ ଡାହାଣକୁ ଘୂରୁଥାଏ । ଏହା ଦିନ ରାତି ସବୁବେଳେ ଘୂରୁଥାଏ । ତେଣୁ ଆମେ

ବୁଦ୍ଧଦେବଙ୍କୁ ସବୁବେଳେ ପ୍ରାର୍ଥନା କରୁଥାଉଁ । ଏଥିରେ ସୁବିଧା ଏତିକି ଯେ ଆମକୁ ପ୍ରାର୍ଥନାସବୁ ମୁହଁରେ ବାରମ୍ବାର ଆବୃତ୍ତି କରିବାକୁ ହୁଏ ନାହିଁ ।

ଚନ୍ଦ୍ରମାମୁ— ପ୍ରାର୍ଥନା କରିବାର ଏ ଗୋଟାଏ ବଡ଼ ସହଜ ଉପାୟ ତ !

ଲାମା— ଆମ ଦେଶର ସବୁଲୋକେ ସାନ ସାନ ଧର୍ମଚକ୍ର ହାତରେ ଧରି ତାହାକୁ ଘୂରାଉଥାନ୍ତି । ସାନ ପିଲାମାନେ ବି ଧର୍ମଚକ୍ର ଘୂରାଇବାକୁ ଶିଖନ୍ତି । ସେମାନେ ବି ମୁହଁରେ ପ୍ରାର୍ଥନା କରନ୍ତି ନାହିଁ । ଧର୍ମଚକ୍ର ଘୂରାଇଲେ ପ୍ରାର୍ଥନା ହୁଏ । ଏହା ପିଲାମାନଙ୍କ ପକ୍ଷରେ ଖୁବ୍ ସହଜ ।

କାହ୍ନୁ— ଦେଖୁଛ ମାମୁ, ଏ ଦେଶର ଲୋକଙ୍କ ଧର୍ମବିଶ୍ୱାସ କିପରି ?

ଚନ୍ଦ୍ରମାମୁ— ହଁ, ଏମାନଙ୍କର ବୁଦ୍ଧଙ୍କ ଧର୍ମ ପ୍ରତି ଭାରି ବିଶ୍ୱାସ ।



ଜଣେ ତିବ୍ବତୀୟ ହାତରେ ଧର୍ମଚକ୍ର ଘୂରାଉଛନ୍ତି

ତିବ୍ବତ ଦେଶରେ ଅନେକଗୁଡ଼ିଏ ମଠ ଅଛି । ଏହି ମଠମାନଙ୍କରେ ଲାମାମାନେ ରହନ୍ତି । ଗୋଟାଏ ଗୋଟାଏ ମଠରେ ହଜାର ହଜାର

ଲାମା ଥାଆନ୍ତି । ଏମାନଙ୍କ ସଂଖ୍ୟା ଏତେ ଅଧିକ ଯେ ତିବ୍‌ବତକୁ ଲାମାଙ୍କ ଦେଶ କହିଲେ ଚଳେ । ଲାମାମାନେ ଗେରୁଆ ରଙ୍ଗର ଲୁଗା ପିନ୍ଧନ୍ତି ଓ ମୁଣ୍ଡ ଲଣ୍ଡା ହୁଅନ୍ତି । ଏମାନେ ବିବାହ କରନ୍ତି ନାହିଁ । ଖାଇବା ପିଇବାର୍ ଚିନ୍ତା ଏମାନଙ୍କର ନ ଥାଏ । ଲୋକମାନେ ଏମାନଙ୍କୁ ବହୁତ ପ୍ରକାର ଜିନିଷ ଭେଟି ଦିଅନ୍ତି । ଲାମାମାନଙ୍କ ଉପରେ ଲୋକଙ୍କର ଖୁବ୍ ବିଶ୍ୱାସ ।

କାହ୍ନୁ ଓ ଜହ୍ନମାମୁ ଲାମାମାନଙ୍କ ପାଖରୁ ବିଦାୟ ନେଇ ଆଉ ଗୋଟାଏ ସ୍ଥାନକୁ ଆସିଲେ । ଏହା ଗୋଟାଏ ସହର । ଏଠାରେ ଦେଖିଲେ ଯେ ଗୋଟାଏ ଉଚ୍ଚା ପଥର ପାଚେରୀ ସହରକୁ ଘେରି ରହିଛି । ପାଚେରୀ ଦେହରେ ମଝିରେ ମଝିରେ ଦୁଆର ସବୁ ଅଛି । ତା' ଉପରେ ବୁରୁଜମାନଙ୍କରେ ସୈନ୍ୟସବୁ ରହିଛନ୍ତି ।

ଏହିଠାରେ କାହ୍ନୁ ଓ ଜହ୍ନମାମୁ ସେ ଦେଶର ଜଣେ ଚାଷୀକୁ ଭେଟିଲେ । ଚାଷୀ ଜିଭ ବାହାର କରି ସେମାନଙ୍କୁ ଅଭିବାଦନ କଲା ।

ଏଠାକାର ଲୋକେ କୌଣସି ଲୋକ ସାଙ୍ଗରେ ଭେଟ ହେଲେ ତାଙ୍କୁ ନମସ୍କାର କରନ୍ତି ନାହିଁ । ଅତିଥିଙ୍କୁ ଶଙ୍ଖୁଳିବା ପାଇଁ ସେମାନେ ଜିଭ ବହାର କରି ଦେଖାନ୍ତି । ଏହାହିଁ ସେମାନଙ୍କର ନମସ୍କାରବିଧି । ଏପରି ଜିଭ ବାହାର କରିବାର ଅର୍ଥ— ତମେ ଭଲ ଅଛ ତ ?

ଜହ୍ନମାମୁ ପଚାରିଲେ— ପାଚେରୀ ଭିତରେ ଏହି ଯେଉଁ ନଅରଟି ଦେଖାଯାଉଛି ତାହା କଅଣ ?

ଚାଷୀ— ଏ ହେଉଛି ଦଲାଇଲାମାଙ୍କ ନଅର । ଏପରି ବିଚିତ୍ର ନଅର ପୃଥିବୀରେ ଆଉ କେଉଁଠି ନାହିଁ । ସେ ପୋଟଲା ମଠର ମହନ୍ତ । ସବୁ ଲାମାଙ୍କ ଉପରେ ଦଲାଇଲାମାଙ୍କ ସ୍ଥାନ । ସେ ଦେଶର ସର୍ବେସର୍ବା । ସେ ଲୋକମାନଙ୍କ ହାରିଗୁହାରି ଶୁଣନ୍ତି ଓ ଲୋକମାନଙ୍କୁ ଶାସନ କରନ୍ତି । ଆମେମାନେ ତାଙ୍କୁ ଦେବତାଙ୍କ ପରି ଭକ୍ତି ଓ ସମ୍ମାନ କରୁଁ । ଦଲାଇଲାମାଙ୍କୁ ଆମେ ବୁଦ୍ଧଦେବଙ୍କ ଅବତାର ବୋଲି ମଣୁଁ ।

ଜହ୍ନମାମୁ— ସ୍ୱୟଂ ବୁଦ୍ଧଦେବ କ'ଣ ଦଲାଇଲାମା ରୂପରେ ପୃଥିବୀକୁ ଆସନ୍ତି ?



ଦଲାଇଲାମାଙ୍କ ନଅର

ଚାଷୀ— ହଁ, ତା' ନୁହେଁ କ'ଣ । ଜଣେ ଦଲାଇଲାମା ମରିଗଲେ ବୁଦ୍ଧଦେବଙ୍କର ଗୋଟିଏ ଅବତାର ଶେଷ ହୋଇଗଲା ବୋଲି ଆମେ ଭାବୁଁ । ଦଲାଇଲାମାଙ୍କର ଯେଉଁ ସମୟରେ ମୃତ୍ୟୁ ହୁଏ, ଦେଶର ଯେ କୌଣସି ଅଞ୍ଚଳରେ ଠିକ୍ ସେହି ସମୟରେ ଯେଉଁ ପିଲାମାନେ ଜନ୍ମ ହୋଇଥାନ୍ତି, ସେମାନଙ୍କ ମଧ୍ୟରୁ ଜଣକୁ ଦଲାଇଲାମା ରୂପରେ ବଛାଯାଏ । ଆଉସବୁ ମଠର ଲାମାମାନେ ସବୁ ଅଞ୍ଚଳ ବୁଲି ସେହି ସମୟରେ ଜନ୍ମ ହୋଇଥିବା ପିଲାମାନଙ୍କୁ ପରଖ କରନ୍ତି । ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲା ବୋଲି ଯେଉଁ ପିଲାକୁ ମନେ କରନ୍ତି, ଦଲାଇଲାମାଙ୍କ ଆତ୍ମା ତାହାରିଠାରେ ପ୍ରବେଶ କରିଛି ବୋଲି ଧରିନିଆଯାଏ । ତେଣୁ ସେ ବୁଦ୍ଧଦେବଙ୍କର ପରବର୍ତ୍ତୀ ଅବତାର ହୁଅନ୍ତି ।

କାହ୍ନୁ— ଏ ତ ବଡ଼ ବିଚିତ୍ର କଥା ! ପିଲାର ବାପମାଆ ପିଲାଟିକୁ ଛାଡ଼ି ଦିଅନ୍ତି କିପରି ?

ଚାଷୀ— ଲାମାମାନେ ପିଲାର ବାପମାଆଙ୍କୁ ବହୁତ ଟଙ୍କା ଓ ଦାମିକା ଜିନିଷ ଉପହାର ଦେଇ ପିଲାଟିକୁ ଘେନି ଆସନ୍ତି । ତାକୁ ମଠରେ ରଖି ଅତି ଯତ୍ନରେ ପାଳନ୍ତି । ତା'ର ଶିକ୍ଷାଦୀକ୍ଷା ସେହିଠାରେ

ହୁଏ । ପିଲାଟି ଦିନରୁ ମଠରେ ରହି, ଧର୍ମଜୀବନ କଟାଇ ଓ ଧର୍ମଶାସ୍ତ୍ର ପଢ଼ି, ସେ ବଡ଼ ଧର୍ମପରାୟଣ ହୋଇ ଉଠନ୍ତି । ସାବାଳକ ହେଲେ ଦଲାଇଲାମାଙ୍କୁ ଦେଶର ସର୍ବୋଚ୍ଚ ଶାସକରୂପେ ଅଭିଷିକ୍ତ କରାଯାଏ । ବର୍ତ୍ତମାନ ତିବ୍ବତ ଚୀନର ଶାସନାଧୀନ ହେବାରୁ ଆଉ ପୂର୍ବଭଳି ଦଲାଇଲାମା ସେଠାରେ ସର୍ବୋଚ୍ଚ ଶାସକ ରୂପେ ପରିଗଣିତ ହେଉ ନାହାନ୍ତି ।

ଜହ୍ନମାମୁ ପଚାରିଲେ – ତମ ଘର କେଉଁଠାରେ ?

ଚାଷୀ – ମୋ' ଘର ଗୋଟିଏ ଗାଁରେ । ଏଠାରୁ ଅଳ୍ପ ବାଟ । ଠିକ୍ ସାଙ୍ଗପୋ ନଈକୂଳରେ । ତମେ ଦୁହେଁ ଆସ । ମୋ ସାଙ୍ଗରେ ଯାଇ ଆମ ଗାଁ ଦେଖି ଆସିବ ।

ଚାଷୀ ଆଗେ ଆଗେ ଚାଲିଲା । ତା' ପଛକୁ ଜହ୍ନମାମୁ, ତା' ପଛକୁ କାହ୍ନୁ, ସବା ପଛରେ ଠେକୁଆ ଚାଲି ଚାଲି ଗଲେ । ପଥୁରିଆ ବାଟରେ ଯିବାକୁ କାହ୍ନୁ ଓ ଜହ୍ନମାମୁଙ୍କୁ କଷ୍ଟ ହେଉଥାଏ । କିଛି ଦୂର ଯାଇ ସେମାନେ ଗଛପତ୍ରଭରା ଗୋଟିଏ ଗାଁ ଦେଖିଲେ ।

ଚାଷୀ କହିଲା – ଏହି ଆମ ଗାଁ । ଆଗରେ ଯେଉଁ ପଥର ଘରଟି ଦେଖୁଛ, ସେ ଘର ମୋର ।

ଚାଷୀ ଅତିଥି ଦୁଇଜଣଙ୍କୁ ଅତି ଆଦର କରି ଘର ଭିତରକୁ ଡାକିନେଲା । ଘରଟିର ଦୁଆର ଓ ଝରକା ଖୁବ୍ ଛୋଟ । ତେଣୁ ଘର ଭିତର ଅନ୍ଧାରିଆ ହୋଇଥାଏ ।

ଚାଷୀ ପରିବାରର ସମସ୍ତେ ଦୁଇଜଣ ବିଦେଶୀ ଲୋକଙ୍କୁ ଦେଖି ବଡ଼ ଆଶ୍ଚର୍ଯ୍ୟ ହୋଇଗଲେ । ତାଙ୍କ ଦେଶକୁ କୌଣସି ବାହାର ଲୋକ ସହଜରେ ଆସନ୍ତି ନାହିଁ ।

ଚାଷୀର ସ୍ତ୍ରୀ କାହ୍ନୁ ଓ ଜହ୍ନମାମୁଙ୍କୁ ଗହମ ଅଟାରେ ତିଆରି ରୁଟି ଆଉ ଚାହା ଆଣିଦେଲା । କାହ୍ନୁକୁ ଏ ଚାହା ଭଲ ଲାଗିଲା ନାହିଁ । ସେ ପଚାରିଲା – ତମେ ଏ ଚାହା କିପରି ତିଆରି କରିଛ ?

ଚାଷୀର ସ୍ତ୍ରୀ – ଆମେ ଯେଉଁ ଚାହା ବ୍ୟବହାର କରୁ, ତାହା ଇଟା ପରି ମୁଣ୍ଡା ମୁଣ୍ଡା ହୋଇଥାଏ ।

କାହ୍ନୁ— ଏପରି ଚାହା ତ ଆମ ଦେଶରେ ନାହିଁ !

ଚାଷୀର ସ୍ତ୍ରୀ— ଆମେ ଏ ଚାହା ଅନ୍ୟ ଦେଶରୁ ଆଣୁଁ । ଆମ ଦେଶର ପାହାଡ଼ିଆ ରାସ୍ତାରେ ଯିବା ଆସିବା ଅତି କଷ୍ଟକର କଥା । ଗୁଣ୍ଡ ଚାହା କି ପତ୍ର ଚାହା ବୋହି ଆଣିବା ପାଇଁ ବେଶି ଅସୁବିଧା ହୁଏ । ତେଣୁ ଆମେ ଏପରି ନିଦା ମୁଣ୍ଡା ଚାହା ଆଣୁଁ । ଏ ଚାହାକୁ ପାଣିରେ ଫୁଟାଇ ସେହି ପାଣିକୁ ଗୋଟିଏ ଲମ୍ବା ପାତ୍ରରେ ଢାଳି ରଖୁଁ । ତା' ପରେ ସେଥିରେ ମଖନ ଓ ଲୁଣ ପକାଇ ଖୁଆରେ ମନ୍ଥିଦେଉଁ ।

ଚନ୍ଦ୍ରମାମୁ— ହଇରେ କାହ୍ନୁ ! ତୋ ଘରେ ସିନା ଚାହାପାଣିରେ ଦୁଧ ଓ ଚିନି ମିଶାନ୍ତି । ସେ ଚାହା ତୋ ପାଟିକୁ ବଡ଼ ସୁଆଦିଆ ଲାଗେ । ଏ ଦେଶର ଚାହା ତୋ ପାଟିକୁ ରୁଚିବ କେତେକେ ?

କାହ୍ନୁ— ନାହିଁ ମାମୁ, ମୁଁ ସେ କଥା କହୁ ନାହିଁ । ମୋତେ ଚାହା ଖରାପ ଲାଗିଲା କହିଲେ ଏହି ଚାଷୀ ସ୍ତ୍ରୀ ଅପମାନ ବୋଧ କରିବେ । ତାଙ୍କ ରୁଚି ମୋତେ ବଡ଼ ଭଲ ଲାଗିଲା ।

ଚାଷୀର ସ୍ତ୍ରୀ— ଆମର ଏ ଦେଶରେ ଚାଷଜମି ଖୁବ୍ କମ୍ । ସେଥିରେ ଆମେ ଅଳ୍ପ ବେଶି ଗହମ ଓ ବାର୍ଲି ଚାଷ କରୁଁ । ବଗିଚାରେ କିଛି କିଛି ପନିପରିବା ଲଗାଉଁ ।

ଚାଷୀର ସ୍ତ୍ରୀ ଘରକାମ କରିବାକୁ ଚାଲିଗଲା । ଚାଷୀ ନିଜେ ଆସି ଅତିଥି ଦୁଇଜଣଙ୍କ ସାଙ୍ଗରେ କଥାବାର୍ତ୍ତା କଲା ।

କାହ୍ନୁ କହିଲା— ମଉସା ! ତମେ ଯେଉଁ ପୋଷାକ ପିନ୍ଧିଛ ତାହା ବଡ଼ ବଢ଼ିଆ ପୋଷାକ ।

ଚାଷୀ— ହଁରେ ପୁଅ ! ଆମ ଦେଶରେ କିପରି କଣକଣିଆ ଶୀତ ଦେଖୁଛଚ ତ ? ଯେତେବେଳେ କାଲୁଆ ପବନ ବହେ, ଆମ ଦେହ ହାତ ଜାଡ଼ିଯାଏ । ଆମେ ପଶମ ଓ ଚମଡ଼ାରୁ ତିଆରି ପୋଷାକରେ ସର୍ବାଙ୍ଗ ଘୋଡ଼ାଇ ହେଉଁ । ଆମ ଟୋପି ଓ ଜୋତା ମେଣ୍ଢା ଚମଡ଼ାରୁ ତିଆରି ହୁଏ । ଆମ ଦେଶର ସ୍ତ୍ରୀଲୋକ ଓ ପିଲାମାନେ ବି ଏହି ପ୍ରକାର ପୋଷାକ ପିନ୍ଧନ୍ତି । କାମ କଲାବେଳେ ଆମେ ପୋଷାକ ଭିତରୁ ଗୋଟିଏ

ହାତ ବାହାର କରି କାମ କରୁଁ । ଭାରୀ କାମ ପଡ଼ିଲେ ଆମକୁ ଦୁଇହାତ ବାହାର କରିବାକୁ ହୁଏ ।

ଜହ୍ନମାମୁ— ତମ ଦେଶଟା, ମୁଁ ଦେଖୁଛି, ଖାଲି ପାହାଡ଼ ପର୍ବତର ଦେଶ । ତମେମାନେ କେଡ଼େ ନୀରସ ଜୀବନ କଟାଉଛ ? ତମ ଦେଶରେ କ'ଣ କିଛି ପର୍ବପର୍ବାଣି ନାହିଁ ?



ତିବ୍ବତର ଚାଷୀମାନଙ୍କ ପୋଷାକ

ଚାଷୀ— ହଁ ଅଛି । ଗୋଟାଏ ଦୁଇଟା ପର୍ବ ଅଛି । ଗ୍ରୀଷ୍ମକାଳରେ ଆମ ଦେଶରେ ଗୋଟାଏ ଉତ୍ସବ ହୁଏ । ସେ ଉତ୍ସବରେ ସ୍ତ୍ରୀ, ପୁରୁଷ, ବାଳକ, ବାଳିକା, ସମସ୍ତେ ଯୋଗ ଦିଅନ୍ତି । ସ୍ତ୍ରୀଲୋକମାନେ ସେଦିନ ଦାମିକା ମୁକୁଟ ପିନ୍ଧନ୍ତି । ଏଥିରେ ସୁନା ରୁପାର ଅଳଙ୍କାର ସବୁ ଖଞ୍ଜା ହୋଇଥାଏ । ଯେ ତାର ମୁକୁଟକୁ ଯେତେ ସୁନ୍ଦର ସଜାଇ ପାରେ, ତା'ର ସେତେ ବାହାଦୁରି ।

ମହୁ— ଆମ ଦେଶର ସ୍ତ୍ରୀଲୋକମାନେ ବି ଯାନିଯାତ୍ରାକୁ ଗଲେ ଭଲ ଭଲ ପୋଷାକ ପିନ୍ଧି ଯାଆନ୍ତି ।

ଚାଷୀ— ଆମ ଦେଶର ଆଉ ଗୋଟିଏ ପର୍ବ କଥା କହୁଛି ଶୁଣ । ଏହା ଭୂତନାଚ । ଏ ଗୋଟିଏ ପ୍ରଧାନ ପର୍ବ । ଗୋଟିଏ ଗୋଟିଏ ଅଞ୍ଚଳର ଲୋକମାନେ ଏ ଦିନ ଏକାଠି ହୁଅନ୍ତି । ଲାମାମାନେ ଲମ୍ବା ପେଁକାଳୀ ଓ ଅନ୍ୟାନ୍ୟ ବାଜା ବଜାଇ ସଂକେତ ଦିଅନ୍ତି ।



ଭୂତନାଚ

ଏ ପେଁକାଳୀଗୁଡ଼ିକ ଦଶହାତ ଲମ୍ବ ହୋଇଥାଏ । ପେଁକାଳୀ ବାଜିଲେ ନାଚୁଆମାନେ ଏକାଠି ହୋଇ ନାଚନ୍ତି । ସେମାନେ ଯେଉଁ ପୋଷାକ

ପିନ୍ଧି ନାଚନ୍ତି, ତାହା ଅତି ଭୀଷଣ ଦେଖାଯାଏ । ସେମାନେ ମୁହଁରେ ଅଦ୍ଭୁତ ଧରଣର ମୁଖା, ମୁଣ୍ଡରେ ହରିଣ ଶିଙ୍ଗ ଓ ଦେହରେ ବିଚିତ୍ର ରଙ୍ଗର ପୋଷାକ ପିନ୍ଧିଥାନ୍ତି । ଏହି ନାଟୁଆମାନେ ଭୂତ ଭବିଷ୍ୟତ୍ ସବୁ ଜାଣନ୍ତି । ସେମାନଙ୍କ କ୍ଷମତା ଖୁବ୍ ବେଶି ।

ତିବ୍ବତ ଦେଶର ପର୍ବପର୍ବାଣି କଥା ଶୁଣିସାରି କାହ୍ନୁ ଓ ଜହ୍ନମାମୁ ଚାଷୀଠାରୁ ମେଲାଣି ଘେନି ଠେକୁଆ ପିଠିରେ ଚଢ଼ି କିଛିଦୂର ଉଡ଼ି ଉଡ଼ି ଗଲେ । ଉପରୁ ଦେଖିଲେ ଗୋଟାଏ ଅଳ୍ପ ଉଚ୍ଚା ପାହାଡ଼ ଉପରେ ପଲେ ପଶୁ ଚରୁଛନ୍ତି ଓ ଜଣେ ପଶୁପାଳକ ବସି ବଂଶୀ ବଜାଉଛି । କାହ୍ନୁ ଓ ଜହ୍ନମାମୁ ସେହିଠାରେ ଓହ୍ଲାଇଲେ । ପଶୁପାଳକ ଅଜଣା ଲୋକଙ୍କୁ ଦେଖି ଚମକିପଡ଼ିଲା ।

ଜହ୍ନମାମୁ କହିଲେ– ଆମେ ତମ ଦେଶକୁ ବୁଲିବାକୁ ଆସିଛୁ ।

କାହ୍ନୁ କହିଲା– ହେ ମଉସା ! ଆମେ ତମର କୁଣିଆ ହୋଇ ଆସିଛୁଁ । ତମ ଦେଶର ହାଲଚାଲ ଜାଣିବୁଁ । ତମ ପିଲାମାନଙ୍କ ସାଙ୍ଗରେ ଖେଳିବାକୁ ମୋର ଭାରି ଇଚ୍ଛା ।



ପଶୁପାଳକ ବଂଶୀ ବଜାଉଛି

କାହ୍ନୁ ଓ ଜହ୍ନମାମୁଙ୍କ କଥା ଶୁଣି ପଶୁପାଳକ ଭାରି ଖୁସି ହେଲା । ସେ କହିଲା– ଚାଲ, ମୋର ଏହି ପଶୁପଲକୁ ପ୍ରଥମେ ଦେଖିଯିବ ।

ପଶୁପାଳକ କାହ୍ନୁ ଓ ଜହ୍ନମାମୁଙ୍କୁ ପଶୁପଲଙ୍କ ପାଖକୁ ନେଇଗଲା । ଏ ପଶୁଗୁଡ଼ିକୁ ଦେଖି କାହ୍ନୁ ଓ ଜହ୍ନମାମୁ ବଡ଼ ଆଶ୍ଚର୍ଯ୍ୟ ହୋଇଗଲେ ।

କାହ୍ନୁ ପଚାରିଲା – ହେ ମଉସା ! ଏ ପଶୁଗୁଡ଼ିକ କି ଜାତିର ପଶୁ ?

ପଶୁପାଳକ – ଏ ଗୁଡ଼ିକ ଚମରୀ ଗୋରୁ । ଦେଖ, ଏ ଗୋରୁର ଦେହ କେଡ଼େ ଲମ୍ବା ଓ ଗହଳିଆ ଲୋମରେ ଢଙ୍କା ହୋଇଛି । ଏହାର ଲାଞ୍ଜରେ ଗୁଡ଼ାଏ ଝଙ୍କାଳିଆ ଲୋମ ଅଛି । ଏଥିରୁ ଚଅଁର ମୁଠା ତିଆରି ହୁଏ ।

ଜହ୍ନମାମୁ – ଚମରୀ ଗୋରୁ ତମର କି କାମରେ ଲାଗେ ?



ଚମରୀ ଗୋରୁ

ପଶୁପାଳକ – ଆମେ ଏମାନଙ୍କ ଦ୍ୱାରା ବୋଝ ବୁହାଉଁ । ଏମାନଙ୍କ ପିଠିରେ ଚଢ଼ି ଏକ ଜାଗାରୁ ଅନ୍ୟ ଜାଗାକୁ ଯାଉଁ । ଉଚ୍ଚା ଓ ଗଡ଼ାଣିଆ ପଥରେ ଏମାନଙ୍କ ଗୋଡ଼ ସହଜେ ଖସିଯାଏ ନାହିଁ । ଏହାର ଲୋମରୁ ପୋଷାକ ଓ ତମ୍ବୁ ତିଆରି କରାଯାଏ । ଚମରୀ ଗାଇଠାରୁ ଆମେ ଦୁଧ ଦୁହୁଁ । ଦୁଧରୁ ଲହୁଣି ବାହାର କରୁଁ । ଦରକାର ହେଲେ ଏହାର ମାଂସ ମଧ ଖାଉଁ । ଚମରୀ ଗୋରୁ ନ ଥିଲେ, ଆମେ ଏ ପାହାଡ଼ିଆ ଜାଗାରେ ଚଳି ପାରନ୍ତୁ ନାହିଁ ।

ଜହ୍ନମାମୁ— ବାଃ, ଚମରୀ ଗୋରୁ ତମର ଏତେ କାମରେ ଲାଗେ । ତମେ ଆଉ କି ପଶୁ ପାଳ ?

ପଶୁପାଳକ— ଆମେ ମେଣ୍ଢା ଓ ଛେଳି ମଧ୍ୟ ପାଳୁଁ । ସେମାନଙ୍କ ଚମଡ଼ା ଓ ଲୋମରେ ଆମ ଟୋପି, କୋଟ୍, ଜୋତା ତିଆରି ହୁଏ ।

ସେତେବେଳକୁ ବେଳ ବୁଡ଼ି ଆସିଲାଣି । ପଶୁପାଳକ ପଶୁପଲଙ୍କୁ ନେଇ ତା' ତମ୍ବୁକୁ ବାହାରିଲା । କାହ୍ନୁ ଓ ଜହ୍ନମାମୁଙ୍କୁ କହିଲା— ଆସ, ମୋ ସାଙ୍ଗରେ ଆସ, ଆମେ କେଉଁଠାରେ କିପରି ରହୁଁ, ଦେଖିବ ।

ସମସ୍ତେ ଯାଇ ଗୋଟାଏ କଳା ତମ୍ବୁ ପାଖରେ ପହଞ୍ଚିଲେ । ପଶୁପାଳକ କହିଲା— ଏହି ଆମର ତମ୍ବୁ । ଏହା ଚମରୀ ଗୋରୁର ଲୋମରୁ ତିଆରି ହୋଇଛି । ଏହାର ଚାରିପାଖରେ ଯେଉଁ ମାଟି ପାଚେରି ଦେଖୁଛ, ସେହି ପାଚେରି ଯୋଗୁଁ ଥଣ୍ଡା ପବନ ଆମ ତମ୍ବୁ ଭିତରକୁ ଆସିପାରେ ନାହିଁ ।

କାହ୍ନୁ ପଚାରିଲା— ତମ୍ବୁ ଉପରୁ ଧୂଆଁ ବାହାରୁଛି କାହିଁକି ?

ପଶୁପାଳକ— ତମ୍ବୁ ଭିତରେ ଆମେ ରନ୍ଧାରନ୍ଧି କଲେ ଚୂଲିରୁ ଯେଉଁ ଧୂଆଁ ବାହାରେ, ତାହା ଏହି ଜଳାବାଟେ ବାହାରିଯାଏ ।

ପଶୁପାଳକ କାହ୍ନୁ ଓ ଜହ୍ନମାମୁଙ୍କୁ ତମ୍ବୁ ଭିତରକୁ ଡାକିନେଲା । ତମ୍ବୁ ଭିତରଟା ଧୂଆଁଳିଆ ହୋଇଥାଏ । ଚଟାଣରେ ମସିଣା, ଗାଲିଚା ଓ ଗଦି ପଡ଼ିଥାଏ । ତମ୍ବୁ ମଝିରେ ମାଟିପିଣ୍ଡି ଉପରେ ଗୋଟିଏ ପିତଳ ଡେକ୍‌ଚି ଥୁଆ ହୋଇଥାଏ । ତମ୍ବୁର ଗୋଟାଏ ପାଖରେ ଜଣେ ସ୍ତ୍ରୀଲୋକ ଚାହା ତିଆରି କରୁଥାଏ । ଆଉ ଗୋଟାଏ ପାଖରେ ଆଉ ଜଣେ ସ୍ତ୍ରୀଲୋକ ଗୋଟିଏ ସାନ ପିଲା ଦେହରେ ଚର୍ବି ମାଲିସ୍ କରୁଥାଏ ।

କାହ୍ନୁ କହିଲା— ଆମ ଦେଶରେ ସାନ ପିଲାଙ୍କୁ ତେଲ ଲଗାଇ ଦିଅନ୍ତି । କେହି କେବେ ଦେହରେ ଚର୍ବି ଲଗାନ୍ତି ନାହିଁ ।

ପଶୁପାଳକ— ଆମ ଦେଶରେ ଯେପରି କଣକଣିଆ ଶୀତ, ସେଥିରେ ମୁହଁ ଓ ଦେହର ଚମ ଚେନା ଚେନା ହୋଇ ଫାଟିଯାଏ । ଚର୍ବି ଲଗାଇଲେ ଦେହରେ ଚର୍ବିର ଗୋଟାଏ ବୋଳ ବସିଯାଏ । ଦେହରେ

ଥଣ୍ଡା ପବନ ଲାଗେ ନାହିଁ । ତେଣୁ ଆମ ଦେଶର ଛୁଆ ପିଲା, ବଡ଼ ମଣିଷ ବି ଦେହରେ ଚର୍ବି ବୋଳି ହୁଅନ୍ତି ।

ଚନ୍ଦ୍ରମାମୁ କାହ୍ନୁ କାନରେ ଚୁପ୍‌କରି କହିଲେ— ଦେଖୁଛୁ କାହ୍ନୁ ! ଏମାନଙ୍କ ଦେହର ଚମ କିପରି କୁଞ୍ଚକୁଞ୍ଚିଆ ହୋଇଛି । ମୁଣ୍ଡର କଳାବାଳଗୁଡ଼ିକ କିପରି ଟାଆଁସା ଦିଶୁଛି । ଆଉ ତାଙ୍କ ଚାହାଣି କିପରି ତେରଛା ।

ଚନ୍ଦ୍ରମାମୁଙ୍କ କଥା ଢଙ୍ଗରୁ ପଶୁପାଳକ ସଂକେତ ପାଇ କହିଲା— ଆମ ଦେଶର କାଲୁଆ ପବନରେ ଆମ ଦେହର ଚମ କୁଞ୍ଚକୁଞ୍ଚିଆ ହୋଇଯାଏ । ଆଉ ବରଫ ଉପରେ ସୂର୍ଯ୍ୟ କିରଣ ପଡ଼ିଲେ ତାହାର ଝଲକରେ ଆମେ ଆଖି ପୂରା ମେଲାଇ ପାରୁ ନାହିଁ ।

କାହ୍ନୁ ପଶୁପାଳକର ପୋଷାକକୁ ଏକ ଧ୍ୟାନରେ ଅନାଇ ରହିଥାଏ । ଏହା ଦେଖି ପଶୁପାଳକ କହିଲା— ରେ ପୁଅ ! ଆମ ପୋଷାକ ତୋତେ ଆଶ୍ଚର୍ଯ୍ୟ ଲାଗୁଥିବ ।

କାହ୍ନୁ— ହଁ, ତମେ ପୋଷାକ ପିନ୍ଧି ମୋଟା ମଣିଷଟିଏ ପରି ଦେଖାଯାଉଛ ।

ପଶୁପାଳକ— ଠିକ୍ କହିଛୁ ପୁଅ ! ମୁଁ କ'ଣ ଗୋଟାଏ କୋଟ୍ ପିନ୍ଧିଛି ? ଗୋଟାକ ଉପରେ ଆଉ ଗୋଟିଏ, ତା' ଉପରେ ପୁଣି ଗୋଟାଏ— ଏହିପରି ତିନୋଟି ମୋଟା କୋଟ୍ ପିନ୍ଧିଛି । ମୋର ଏହି କୋଟ୍‌ଗୁଡ଼ିକ ମେଣ୍ଢା ଚମଡ଼ାରେ ତିଆରି ହୋଇଛି । ମୋ ମୁଣ୍ଡରେ ଯେଉଁ ଟୋପି ଦେଖୁଛୁ ତାହା ମଧ୍ୟ ମେଣ୍ଢା ଚମଡ଼ାରେ ତିଆରି । ମୋ ଅଣ୍ଟାରେ ଯେଉଁ କମରବନ୍ଧ ଅଛି, ସେଥିରେ ମୁଁ ବାନ୍ଧିଦିଏ ଛୁରୀ, ବଂଶୀ, କାଠଗିନା, ଧର୍ମଚକ୍ର ଓ ଆଉ ଯାହାକିଛି ମୋ ସଙ୍ଗରେ ନେଇଯିବା ଦରକାର ହୁଏ । ମୋର ବୁଟ୍‌ଜୋତା ଗୋଇଠିଠାରୁ ଆଣ୍ଠୁ ପର୍ଯ୍ୟନ୍ତ ପାଦକୁ ଘୋଡ଼ାଇ ରଖେ । ଏ ଜୋତାର ତଳି ମୋଟା ଦଉଡ଼ିରେ ତିଆରି । ଆମକୁ ବରଫ ଉପରେ ଚାଲିବାକୁ ହୁଏ । ଏ ଜୋତା ପିନ୍ଧିଲେ ପାଦ ଉଷୁମ ଓ ଶୁଖିଲା ରହେ ।

କାହ୍ନୁ ପଚାରିଲା— ହେ ମଉସା ! ତମ ପୁଅଝିଅମାନେ କାହାନ୍ତି ? ତାଙ୍କ ସାଙ୍ଗରେ ମୁଁ ଟିକିଏ ଖେଳନ୍ତି ।

ପଶୁପାଳକ— ରେ ପୁଅ ! ମୋ ସାଙ୍ଗରେ ଆ' । ତମ୍ବୁ ଆରପଟେ ସେମାନେ ଖେଳୁଛନ୍ତି ।

ପଶୁପାଳକ ସାଙ୍ଗରେ କାହ୍ନୁ ଓ ଜହ୍ନମାମୁ ତମ୍ବୁ ପଛପଟକୁ ଗଲେ । ସେଠାରେ ଦେଖିଲେ ଦୁଇ ଜଣ ସାନ ପିଲା ଖଣ୍ଡ ଖଣ୍ଡ ପଥର ନେଇ ଭୂଇଁରେ ଗଡ଼ାଉଛନ୍ତି । ଏ ଖେଳ ସରିଯିବାରୁ ସେ ଦୁହେଁ କେତେଖଣ୍ଡ ହାଡ଼ ଗୋଟାଇ ଆଣି ତାକୁ ନେଇ ଖେଳିଲେ ।

କାହ୍ନୁ ପଚାରିଲା— ଏହି କ'ଣ ତମ ଦେଶର ଖେଳନା ?

ପଶୁପାଳକ— ହଁ, ସାନ ପିଲାମାନେ ସାନ ସାନ ପଥର ଓ ହାଡ଼ ଖଣ୍ଡମାନ ନେଇ ଖେଳନ୍ତି । ଆମ ଦେଶରେ ତାଙ୍କ ପାଇଁ ଆଉ କୌଣସି ଖେଳନା ନାହିଁ ।

ଚାହୁଁ ଚାହୁଁ ଦୁଇଜଣ ବଡ଼ ପିଲା ତମ୍ବୁ ଭିତରୁ ଦଉଡ଼ି ଆସିଲେ । ସେ ଦୁହେଁ ଖଣ୍ଡ ଖଣ୍ଡ ପଥର ନେଇ ଦୂରକୁ ଫୋପାଡ଼ିବାକୁ ଲାଗିଲେ । ଯାହାର ପଥର ଯେତେ ଦୂରରେ ପଡ଼ିବ, ସେ ସେତେ ବାହାଦୁରି ନେବ । ଏ ଖେଳ ଶେଷ ହେଲା । ତା' ପରେ ଦୁଇ ବାଳକ କୁସ୍ତି କରିବାରେ ମାତିଗଲେ । କୁସ୍ତି କରୁଁ କରୁଁ ତାଙ୍କ ଦେହରୁ ଝାଳ ବୋହିପଡ଼ିଲା । ଥକ୍କା ମାରିବା ପାଇଁ ସେ ଦୁହେଁ ସେହିଠାରେ ବସିପଡ଼ିଲେ ।

ପଶୁପାଳକ କହିଲା— ଆରେ କାହ୍ନୁ ! ତୁ କେତେବେଳୁ କିଛି ଖାଇ ନାହୁଁ । ତୋତେ କ'ଣ ଭୋକ ଲାଗୁନାହିଁ ?

ଜହ୍ନମାମୁ କହିଲେ— କାହ୍ନୁ ବଡ଼ ଲାଜକୁଳା ପିଲା । ଭୋକ ଲାଗିଲେ ସେ କ'ଣ କାହାକୁ କିଛି କହିବ ? ତା' କଥା ତମେ କ'ଣ ପଚାରୁଛ ? ମୋ ପେଟ ତ ଭୋକରେ ଆଉଟ ପାଉଟ ହେଲାଣି ।

ପଶୁପାଳକ କାହ୍ନୁ ଓ ଜହ୍ନମାମୁଙ୍କୁ ତମ୍ବୁ ଭିତରକୁ ଡାକିନେଲା । ପଶୁପାଳକର ସ୍ତ୍ରୀ ରୁଟି ଓ ଶୁଖିଲା ମାଉଁସ ଆଣିଦେଲା । କାହ୍ନୁ ରୁଟିତକ ଖାଇଦେଲା । ଶୁଖିଲା ମାଉଁସତକ ଜହ୍ନମାମୁଙ୍କ ଆଡ଼କୁ ବଢ଼ାଇ ଦେଲା । ଜହ୍ନମାମୁଙ୍କର ଖାଇବାରେ କିଛି ବାଛବିଚାର ନ ଥାଏ । ସେ ପେଟୁ ଲୋକ । ରୁଟି, ମାଉଁସ ସବୁଯାକ ଖାଇଦେଲେ । ତା'ପରେ ପଶୁପାଳକର ଗୋଟିଏ ଝିଅ ଚାହା ଆଣିଦେଲା ।

ଚନ୍ଦ୍ରମାମୁ ପଚାରିଲେ— ତମର ଏ ରୁଟି ମୋତେ ବଡ଼ ଭଲ ଲାଗିଲା । ଏହା କାହିଁରେ ତିଆରି ହୋଇଛି ?

ପଶୁପାଳକ— ଏ ରୁଟି ଆମେ ଗହମ ଚୂନାରୁ ତିଆରି କରିଛୁଁ । ଆମ ଦେଶର ଚାଷୀମାନେ ଯେଉଁ ଗହମ ଚାଷ କରନ୍ତି ତାହା ଅତି ଅଳ୍ପ । ଆମେ ପାଖ ପଡ଼ିଶା ଦେଶରୁ ଗହମ ଆଣୁ । ଆମ ଦେଶରୁ ଅନ୍ୟ ଦେଶକୁ ଯିବା ପାଇଁ ରାସ୍ତାଘାଟ ନାହିଁ । ଅନ୍ୟ ଦେଶକୁ ଯିବାକୁ ହେଲେ ଆମକୁ ପାହାଡ଼ ପର୍ବତର ଗଡ଼ାଣିଆ ବନ୍ଧୁର ପଥରେ ଯିବାକୁ ପଡ଼େ । ଏପରି ଦୁର୍ଗମ ପଥରେ ପାଦରେ ଚାଲି ଚାଲି ଯିବା ସମ୍ଭବ ନୁହେଁ । ତେଣୁ ଆମେ ଚମରୀ ଗୋରୁ ବା ଟଟୁ ଘୋଡ଼ା ପିଠିରେ ଚଢ଼ି ଯାଉଁ । ସାଙ୍ଗରେ ମେଣ୍ଢା, ଛେଳି ଓ ପଶୁଲୋମ ନେଇଯାଉଁ । ଏସବୁ ବଦଳ କରି ଆମେ ଅନ୍ୟ ଦେଶରୁ ଗହମ, ଚାହା ଓ ଆଉ କେତେକ ଜିନିଷ ଆଣୁଁ ।

ଚନ୍ଦ୍ରମାମୁ କହିଲେ— ତମ ଦେଶଟା ଯିମିତି ପାହାଡ଼ିଆ, ସେମିତି ଥଣ୍ଡା । ଶୀତଦିନେ ତମେ ଏ ତମ୍ବୁରେ ରହ କିପରି ?

ପଶୁପାଳକ— ହଁ ସତ କହିଲ । ଶୀତକାଳରେ ଆମ ଦେଶରେ ଏତେ ବରଫ ପଡ଼େ ଯେ ଯେଉଁ ଆଡ଼କୁ ଚାହିଁଲେ ଖାଲି ଗଦାଗଦା ବରଫ ଦିଶୁଥାଏ । ସେତେବେଳେ ଆମେ ପାହାଡ଼ ତଳେ ପଥରତିଆରି ଘର ଭିତରେ ରହୁଁ ।



ପଶୁପାଳକର ଶୀତଦିନିଆ ପଥର ଘର

କାହ୍ନୁ କହିଲା— ହେ ମଉସା ! ତମ ଦେଶର ଗୋଟାଏ ଗପ କୁହ, ଆମେ ଶୁଣିବୁ ।

ପଶୁପାଳକ— ହେଉ, କହୁଛି ଶୁଣ । "ମଣିଷ ଠିକିଲେ ଶିଖେ"— ଏ ବିଷୟରେ ଆମ ଦେଶରେ ଗୋଟାଏ କୌତୁକିଆ ଗପ ଅଛି । ଏ ଗପଟି ଜାଣିଲେ ତୁ କେତେ କଥା ଶିଖିବୁ ।

କାହ୍ନୁ— ହେ ମଉସା ! ତମ ଗପ ଶୁଣିଯାଇ ଆମ ଦେଶରେ ମୋର ଯେତେ ସାଙ୍ଗସାଥୀ ଅଛନ୍ତି, ସେମାନଙ୍କୁ କହିବି ।

ପଶୁପାଳକ— ଭଲ କଥା । ତେବେ ଶୁଣ ।

ତିବ୍ବତ ଦେଶର ଗୋଟିଏ ଗାଁରେ ଦୁଇଜଣ ଲୋକ ଥିଲେ । ତାଙ୍କ ଭିତରୁ ଜଣେ ଭାରି ଧନୀ ଲୋକ । ଆଉ ଜଣେ ଅତି ଗରିବ । ଧନୀ ଲୋକଟିର ନାମ ସେ-ରିଙ୍ଗ୍ । ସେ-ରିଙ୍ଗ୍ ଗର୍ବୀ, ଲୋଭୀ ଆଉ ସ୍ୱାର୍ଥପର । ଗରିବ ଲୋକଟିର ନାମ ଚମ୍-ବା । ଚମ୍-ବା ଭାରି ଦୟାଳୁ । ସମସ୍ତେ ତାକୁ ଖୁବ୍ ଭଲ ପାଆନ୍ତି ।

ଥରେ ବସନ୍ତ କାଳରେ ଦୁଇଟି ଘରଚଟିଆ ଚଢ଼େଇ ଆସି ଚମ୍-ବାର ଘର ଛାତରେ ବସା ବାନ୍ଧିଲେ । ଚଢ଼େଇ ଦୁଇଟି ବସାରେ ଅଣ୍ଡା ଦେଲେ । ଅଣ୍ଡା ଫୁଟି ଛୁଆ ବାହାରିଲେ । ଛୁଆଗୁଡ଼ିକ ଉଡ଼ିବାକୁ ଶିଖି ନ ଥାନ୍ତି । ଦିନେ କ'ଣ ହେଲା କି ଗୋଟିଏ ଛୁଆ ବସାରୁ ଖସିପଡ଼ିଲା ଆଉ ତା'ର ଗୋଡ଼ ଭାଙ୍ଗିଗଲା । ଚମ୍-ବା ତ ଦୟାଳୁ ଲୋକ । ସେ କଲା କ'ଣନା ଚଢ଼େଇ ଛୁଆଟିକୁ ନେଇଯାଇ ଭଙ୍ଗା ଗୋଡ଼ରେ ଗୋଟାଏ ପଟି ବାନ୍ଧିଦେଲା । ତାକୁ ଅତି ଯତ୍ନରେ ନେଇ ବସାରେ ରଖିଦେଲା ।

ଚମ୍-ବା ଜାଣି ନ ଥିଲା ଯେ ଏ ଘରଚଟିଆ ଛୁଆଟି ଗୋଟିଏ ପରୀ । କିଛିଦିନ ପରେ ଚଢ଼େଇଛୁଆଟି ଉଡ଼ିବାକୁ ଶିଖିଲା । ଦିନେ ସେ ଉଡ଼ି ଉଡ଼ି ଯାଇ ତା' ଥଣ୍ଟରେ ପାଞ୍ଚୋଟି ଶସ୍ୟକଣିକା ଧରି ଫେରି ଆସିଲା । ଏଗୁଡ଼ିକ ଚମ୍-ବାର ଟେବୁଲ ଉପରେ ରଖିଦେଇ କହିଲା— ତମେ ମୋ ପ୍ରତି ଯେଉଁ ଦୟା ଦେଖାଇଛ, ତାହାର ପୁରସ୍କାର ସ୍ୱରୂପ ମୁଁ ତୁମକୁ ଏହି ଶସ୍ୟକଣିକାଗୁଡ଼ିକ ଦେଉଛି ।

ଏ ଗୁଡ଼ିକ ତମ ବଗିଚାରେ ପୋତିବ, ଦେଖିବ ସେଥିରୁ କ'ଣ ବାହାରୁଛି । ଏହା କହି ଚଢ଼େଇ ଛୁଆଟି ଉଡ଼ିଗଲା ।

ଚମ୍-ବା ଏ ଶସ୍ୟ କଣିକାଗୁଡ଼ିକ ତା' ବଗିଚାରେ ପୋତିଲା । ସେଥିରେ ପ୍ରତିଦିନ ଅତି ଯତ୍ନରେ ପାଣି ଦେଲା । କଣିକାଗୁଡ଼ିକରୁ ଗଜା ବାହାରିଲା । ଗଜାଗୁଡ଼ିକ ବଢ଼ି ବଢ଼ି ଗଛ ହେଲା । ଗଛରେ ଶସ୍ୟ ଧରିଲା । ଶସ୍ୟଗୁଡ଼ିକ ପାଚିଲା । ଏହି ସମୟରେ ଚମ୍-ବା ଯାଇ ଦେଖେ— ଶସ୍ୟ କାହିଁ ? ଶସ୍ୟକେଣ୍ଡାରେ ଗୋଟିଏ ଗୋଟିଏ ସୁନ୍ଦର ମଣି ଦେଖାଯାଉଛି । ସେ ମଣିଗୁଡ଼ିକ ତୋଳି ଆଣିଲା । ସେଗୁଡ଼ିକ ନେଇ ସେ ସହରକୁ ଗଲା । ସେଗୁଡ଼ିକ ବିକି ଅନେକ ଟଙ୍କା ଆଣିଲା । ଚମ୍-ବା ଆଉ ଗରିବ ହୋଇ ରହିଲା ନାହିଁ । ସେ ବଡ଼ଲୋକ ହୋଇ ଆରାମରେ ରହିଲା ।

ସେ-ରିଙ୍ଗ୍ ଦେଖିଲା ତାର ପଡ଼ୋଶୀ ଚମ୍-ବା ଆଉ ଗରିବ ହୋଇ ରହି ନାହିଁ । ସେ ଦିନେ ଚମ୍-ବା ପାଖକୁ ଆସି କହିଲା— ହେ ବନ୍ଧୁ ! ତମେ ଟଙ୍କା ପଇସା କୁଆଡୁ ପାଇଲ ଯେ ଏଡ଼େ ବଡ଼ଲୋକ ହୋଇଗଲ ? ଚମ୍-ବା ଭାରି ସ୍ନେହୀ ଓ ସାଦାସିଧା ଲୋକ । ସେ-ରିଙ୍ଗ୍‌କୁ ସେ ସବୁ ସମାଚାର କହିଦେଲା ।

ସେ-ରିଙ୍ଗ୍ ଘରକୁ ଆସି ଭାବିଲା— ଚମ୍-ବା ଯେମିତି ମଣିଗୁଡ଼ାଏ ପାଇଲା ମୁଁ ସେହି ଉପାୟ କଲେ ମଣି ନ ପାଇବି କାହିଁକି ? ମୋ ଘର ଛାତରେ କେତେଗୁଡ଼ିଏ ଘରଚଟିଆ ବସା ବାନ୍ଧିଛନ୍ତି । କାଲି ଦେଖିଛି ଚଢ଼େଇଙ୍କ ମା' ତା' ଛୁଆଙ୍କୁ ଅଧାର ଦେଉଥିଲା ।

ସେ-ରିଙ୍ଗ୍ ଘରଛାତ ଉପରକୁ ଚଢ଼ିଲା । ଗୋଟିଏ ଚଢ଼େଇ ଛୁଆକୁ ବାଡ଼ିରେ ଖେଞ୍ଚି ତା' ବସାରୁ ତଳକୁ ଖସାଇ ପକାଇଲା । ଛୁଆଟି ତଳେ ପଡ଼ିଗଲା । ତା' ଗୋଡ଼ ଭାଙ୍ଗିଗଲା । ସେ-ରିଙ୍ଗ ଚଢ଼େଇ ଛୁଆଟିକୁ ଉଠାଇ ନେଇ ତାର ଭଙ୍ଗା ଗୋଡ଼କୁ ଖଣ୍ଡେ ଦଉଡ଼ିରେ ବାନ୍ଧିଦେଲା । ତାକୁ ତା' ବସାରେ ରଖିଦେଲା । କିଛିଦିନ ପରେ ଚଢ଼େଇଛୁଆଟି ଉଡ଼ିବାକୁ ଶିଖିଲା । ଦିନେ ସେ ଉଡ଼ି ଯାଇ ତା ଥଣ୍ଟରେ ଗୋଟିଏ ଶସ୍ୟକଣିକା ଧରି ଫେରି ଆସିଲା । ଶସ୍ୟକଣିକାଟି ସେ-ରିଙ୍ଗ୍‌ର ଟେବୁଲ ଉପରେ ରଖିଦେଇ କହିଲା— ଏହା ମୁଁ ତୁମକୁ

ଦେଉଛି । ତମ ବଗିଚାରେ ଏହାକୁ ପୋତିବ । ଏଥିରୁ କ'ଣ ବାହାରିବ ଦେଖିବ । ଏହା କହି ଚଢ଼େଇଟି ଉଡ଼ିଗଲା ।

ସେ-ରିଙ୍ଗ୍ ଶସ୍ୟକଣିକାଟି ବଗିଚାରେ ପୋତିଲା । ସେଥିରୁ ଗଛ ହେଲା । ଗଛଟି ଅତି ଚଞ୍ଚଳ ବଢ଼ିଲା । ହପ୍ତାକ ପରେ ସେ-ରିଙ୍ଗ୍ ଗଛ ଦେଖିବାକୁ ଗଲା । ଏ କି ଅଦ୍ଭୁତ କଥା ! ଗଛ କାହିଁ ? ଗଛ ଜାଗାରେ ଜଣେ ଦୀର୍ଘାକାର ପୁରୁଷ ହାତରେ ଖଣ୍ଡା ଧରି ଠିଆ ହୋଇଛି । ମଣିଷଟି ଏଡ଼େ ବଳୁଆ ଆଉ ଭୟଙ୍କର ଦେଖାଯାଉଥାଏ ଯେ ସେ-ରିଙ୍ଗ୍ ତାକୁ ଦେଖି ଛାନିଆ ହୋଇ ଘରକୁ ପଳାଇଗଲା । ଏ ମଣିଷଟି ତା' ପଛେ ପଛେ ଗୋଡ଼ାଇଲା । ସେ-ରିଙ୍ଗ୍ ତା' ଘର କବାଟ କିଳିଦେବା ପୂର୍ବରୁ ଏ ମଣିଷଟି ଭୁଷ୍‌କରି ଘର ଭିତରେ ପଶିଗଲା । ସେ-ରିଙ୍ଗ୍‌ର ଯେତେକ ସୁନାରୁପା, ଟଙ୍କା ପଇସା ଥିଲା ସବୁ ନେଇ ପଳାଇଗଲା । ସେ-ରିଙ୍ଗ୍‌ର ଦୁରବସ୍ଥା କହିଲେ ନ ସରେ । ତା' ବଡ଼ପଣିଆ ଆଉ ରହିଲା ନାହିଁ । ଏବେ ସେ ଅତି ଦରିଦ୍ର । ଦୁଇବେଳା ପେଟ ପୂରାଇ ଖାଇବାକୁ ବି ସମ୍ବଳ ନାହିଁ ।

କେତେକ ମାସ ପରେ ଚମ୍-ବା ବିଦେଶ ଭ୍ରମଣରେ ବାହାରିଲା । ଯିବା ପୂର୍ବରୁ ସେ-ରିଙ୍ଗ୍‌କୁ ଥଳୀଏ ସୁନାମୋହର ଦେଇ କହିଲା— ଦେଖ ବନ୍ଧୁ ! ଏ ଥଳୀଟି ତମପାଖରେ ଥାଉ । ମୁଁ ବିଦେଶରୁ ଫେରି ଆସିଲେ ନେବି ।

ସେ-ରିଙ୍ଗ୍ ତ ସହଜେ ଲୋଭୀ । ସେ ଥଳୀଟି ଅତି ଯତ୍ନରେ ରଖିବାକୁ ରାଜି ହେଲା । ଚମ୍-ବା ତା' ବନ୍ଧୁ ପାଖରୁ ବିଦାୟ ନେଇ ବିଦେଶକୁ ଚାଲିଗଲା । ସେ-ରିଙ୍ଗ୍ ଥଳୀ ଖୋଲି ଦେଖିଲା ତା' ଭିତରେ ଗୁଡ଼ାଏ ଅସରପି ।

ଅଭାବ ମଣିଷର ସ୍ୱଭାବ ନଷ୍ଟ କରେ । ସେ-ରିଙ୍ଗ୍ ଲୋଭ ସମ୍ଭାଳି ପାରିଲା ନାହିଁ । ଥଳୀ ଭିତରୁ ମୋହର ସବୁ ବାହାର କରିଦେଇ ସେଥିରେ ବାଲି ପୂରାଇ ରଖିଦେଲା । ଖରଚ କରୁଁ କରୁଁ ସେ-ରିଙ୍ଗ୍ ସବୁଯାକ ମୋହର ଖରଚ କରିଦେଲା ।

ଚମ୍-ବା ଗାଁକୁ ଫେରି ଆସିଲା । ଥଳୀଟି ଆଣିବାପାଇଁ ସେ-ରିଙ୍ଗ୍ ଘରକୁ ଗଲା । ଥଳିଟି ଆଣିବାପାଇଁ ସେ-ରିଙ୍ଗ୍ ଘରକୁ ଗଲା ।

ଥଳୀଟି ଖୋଲି ଦେଖିଲା ତା' ଭିତରେ ମୋହର ନାହିଁ, ଖାଲି ବାଲି । ସେ-ରିଙ୍ଗକୁ କହିଲା— କିହୋ ବନ୍ଧୁ ! ମୋ ମୋହରଗୁଡ଼ିକ କ'ଣ କଲ ?

ସେ-ରିଙ୍ଗ୍ ଚମକି ପଡ଼ି କହିଲା— କଅଣ କହିବି ବନ୍ଧୁ ! ମୋହରଗୁଡ଼ା ପରା ବାଲି ପାଲଟିଗଲା ! ଏଥିରେ ଆଶ୍ଚର୍ଯ୍ୟ ହେବାର କଅଣ ଅଛି ?

ଚମ୍-ବା ମୁହଁ ଫିଟାଇ କିଛି କହିଲା ନାହିଁ । ସେ ଥଳୀଟି ତା ଘରକୁ ନେଇଗଲା ।

କିଛିଦିନ ପରେ ଚମ୍-ବା ସାନ ପିଲାଙ୍କ ପାଠପଢ଼ା ପାଇଁ ଗାଁରେ ଗୋଟାଏ ସ୍କୁଲ ଖୋଲିଲା । ସେ ଗାଁଲୋକଙ୍କୁ ଜଣାଇଦେଲା ଯେ ତାଙ୍କ ପିଲାଙ୍କୁ ପାଠ ପଢ଼ାଇବା ପାଇଁ ସେ ପଇସାପତର କିଛି ନେବ ନାହିଁ ।

ସେ-ରିଙ୍ଗର ପାଞ୍ଚବର୍ଷର ପୁଅଟିଏ ଥିଲା । ସେ ଜାଣିଲା ଯେ ଚମ୍-ବା ତା' ସ୍କୁଲରେ ପିଲାଙ୍କୁ ମାଗଣା ପାଠ ପଢ଼ାଉଛି । ଏ ସୁବିଧା ସେ ଛାଡ଼ିବ କାହିଁକି ? ସେ ତା' ପୁଅକୁ ନେଇ ଚମ୍-ବାର ସ୍କୁଲରେ ତା'ର ନାମ ଲେଖାଇଦେଲା ।

ସେ-ରିଙ୍ଗର କକେଇ ଆଉ ଗୋଟିଏ ଗାଁରେ ରହେ । କକେଇକୁ ଦେଖି ଆସିବା ପାଇଁ ସେ-ରିଙ୍ଗ୍ ସେଇ ଗାଁକୁ ବାହାରିଲା । ସେ ଚମ୍-ବାକୁ କହିଲା— ହେ ବନ୍ଧୁ ! ମୁଁ କିଛିଦିନ ପାଇଁ ମୋ କକେଇ ଗାଁକୁ ଯିବି । ମୋ ପୁଅଟି ବଡ଼ ଦୁଷ୍ଟ । ଘରେ ରହିଲେ ଦୁଷ୍ଟାମି କରିବ । ଏ କେତେଦିନ ତମ ପାଖରେ ରହି ତମ ସ୍କୁଲରେ ପାଠ ପଢ଼ିବ । ଚମ୍-ବା ଏଥିରେ ରାଜି ହେଲା ।

ପୁଅକୁ ଚମ୍-ବା ଜିମାରେ ଛାଡ଼ି ସେ-ରିଙ୍ଗ୍ ତା' କକେଇ ପାଖକୁ ଗଲା । ସେ-ରିଙ୍ଗ୍ ଗଲାପରେ ଚମ୍-ବା ବୁଲିବାକୁ ବାହାରିଲା । ବହୁତ ବୁଲି ବୁଲି ସେ ଗୋଟିଏ ମାଙ୍କଡ଼ ଛୁଆ ଧରି ଆଣିଲା । ତାକୁ ସେ ଅତି ଯତ୍ନରେ ପାଳିଲା । ତାକୁ କହିବାକୁ ଶିଖାଇଲା— ବାପା ! ମୁଁ ମାଙ୍କଡ଼ ପାଲଟିଯାଇଛି । ଏଥିରେ ଆଶ୍ଚର୍ଯ୍ୟ ହେବାର କଅଣ ଅଛି ?

ଚମ୍-ବା ଅପେକ୍ଷା କରୁଥାଏ — ସେ-ରିଙ୍ଗ୍ କେବେ ଫେରି ଆସିବ । କିଛିଦିନ ପରେ ସେ-ରିଙ୍ଗ୍ ଘରକୁ ଫେରି ଆସିଲା । ତା' ସାନପୁଅଟିକୁ ଆଣିବା ପାଇଁ ସେ ସାଙ୍ଗେ ସାଙ୍ଗେ ସ୍କୁଲକୁ ଗଲା । ପୁଅ ଯେଉଁ କ୍ଲାସରେ ପଢ଼େ, ସେ-ରିଙ୍ଗ୍ ସିଧାସଳଖ ସେହି କ୍ଲାସକୁ ଗଲା । କାହିଁ ପୁଅ ତ କ୍ଲାସରେ ନାହିଁ ? ମଲା ଯା ! ଏ କଅଣ ? କ୍ଲାସଟା ଭିତରେ ଗୋଟାଏ ମାଙ୍କଡ଼ ! ସେ ପୁଣି ବସିଛି ଗୋଟାଏ ଡେସ୍କ ସାମନାରେ !

ସେ-ରିଙ୍ଗ୍ ଚମ୍-ବାକୁ ପଚାରିଲା — କାହିଁ ? ମୋ ପୁଅ କାହିଁ ? ସେ ପଢ଼ାପଢ଼ି କରୁଛି କେମିତି ?

ଚମ୍-ବା ଉଁ ଚୁଁ କଲାନାହିଁ । ସେ ମାଙ୍କଡ଼ଟିକୁ ଆଣି ସେ-ରିଙ୍ଗ୍‌କୁ ବଢ଼ାଇଦେଲା । ସେ-ରିଙ୍ଗ୍ ରାଗରେ ତମ ତମ ହୋଇ କହିଲା — ଏ କଅଣ ? ମୋ ପୁଅ କାହିଁ ?



ବାପା ! ମୁଁ ମାଙ୍କଡ଼ ପାଲଟିଯାଇଛି

ଏତିକିବେଳେ ମାଙ୍କଡ଼ କହିଲା— ବାପା ! ମୁଁ ମାଙ୍କଡ଼ ପାଲଟିଯାଇଛି । ଏଥିରେ ଆଶ୍ଚର୍ଯ୍ୟ ହେବାର କଅଣ ଅଛି ?

ସେ-ରିଙ୍ଗ୍‌ର ରାଗ ଆହୁରି ବଢ଼ିଗଲା । ସେ ପରସ୍ତେ ଗର୍ଜନ ତର୍ଜନ କଲା ।

ଚମ୍-ବା ଚୁପ୍ ଚାପ୍ ହୋଇ ରହିଲା । ସେ-ରିଙ୍ଗ୍ ନାଚାର ହୋଇ ଏକୁଟିଆ ଘରକୁ ଫେରିଆସିଲା ।

ସେ-ରିଙ୍ଗ୍ ପାଖରେ ସାମାନ୍ୟ କିଛି ସୁନା ମୋହର ଥିଲା । ସେ ତା' କକେଇ ପାଖକୁ ପୁଣି ଗଲା । କକେଇ ଧନୀ ଲୋକ । ପୁତୁରାର ଡହଳ ବିକଳ ଦେଖି ସେ ତାକୁ ଥଳୀଏ ମୋହର ଦେଲେ ।

ସେ-ରିଙ୍ଗ୍ ମୋହର ଥଳୀଟି ନେଇ ଚମ୍-ବା ପାଖକୁ ଆସିଲା । ଚମ୍-ବାକୁ ଥଳୀଟି ଚୁପ୍‌କରି ବଢ଼ାଇଦେଲା ।

ଚମ୍-ବା ମୁରୁକିହସା ଦେଇ ଥଳୀଟି ନେଇ ଘର ଭିତରକୁ ଚାଲିଗଲା । ଅଳ୍ପକ୍ଷଣ ପରେ ସେ-ରିଙ୍ଗ୍‌ର ଟିକି ପୁଅଟିକୁ ସାଙ୍ଗରେ ନେଇ ଉପସ୍ଥିତ ହେଲା ।

ସେ-ରିଙ୍ଗ୍ ପୁଅକୁ ପାଇ ନିଶ୍ଚିନ୍ତ ହେଲା । ସେ ଦିନୁଁ ସେ ଆଉ କେବେ କାହାକୁ ଠକି ନାହିଁ । ଘରଚଟିଆ ଆଉ ଚମ୍-ବା ଠାରୁ ସେ ଆଚ୍ଛା ଶିକ୍ଷା ପାଇଲା ।

ପଶୁପାଳକର ଗପ ସରିଲା । ଜହ୍ନମାମୁ ପଶୁପାଳକକୁ କହିଲେ— ତମେ ଆମର ଖୁବ୍ ଆଦରଯତ୍ନ କଲ । ସେଥିପାଇଁ ତମକୁ ଧନ୍ୟବାଦ ଦେଉଛି । ଏବେ ବିଦାୟ ଦିଅ । ଆମ ରାଇଜକୁ ଆମେ ଫେରିଯିବୁଁ ।

ଏହା କହି ଜହ୍ନମାମୁ ହାତ ଯୋଡ଼ି ପଶୁପାଳକକୁ ନମସ୍କାର କଲେ । କାହ୍ନୁ ବି ନମସ୍କାର କଲା । ପଶୁପାଳକ ଜିଭ ବାହାର କରି ପ୍ରତି-ନମସ୍କାର ଜଣାଇଲା । ସେ କାହ୍ନୁକୁ ଅତି ଶରଧାରେ ଗୋଟିଏ ଚଅଁର ମୁଠା ଉପହାର ଦେଲା ।

କାହ୍ନୁ ଓ ଜହ୍ନମାମୁ ଠେକୁଆ ପିଠିରେ ବସି ଆକାଶରେ ଉଡ଼ି ଉଡ଼ି ଗଲେ । ଠେକୁଆ କାହ୍ନୁର ଘରପଛ ବାଡ଼ିରେ ଓହ୍ଲାଇଲା । କାହ୍ନୁକୁ ସେହିଠାରେ ଛାଡ଼ିଦେଇ ଜହ୍ନମାମୁ ଆକାଶରେ ଉଡ଼ି ନିଜ ରାଇଜକୁ ଚାଲିଗଲେ ।

## ଦ୍ୱିତୀୟ ଖଣ୍ଡ

# ଜନବହୁଳଦେଶ

## ଚୀନା ପିଲା

କାହ୍ନୁ ଘରେ ବସି ରହିବାର ପିଲା ନୁହେଁ । ଦେଶ ବିଦେଶ ବୁଲିବାରେ ତା'ର ଭାରି ଆଗ୍ରହ, ଭାରି ଉତ୍ସାହ । ସପ୍ତାହକ ପରେ କାହ୍ନୁ ଜହ୍ନମାମୁଙ୍କୁ ହାତ ଠାରି ପୁଣି ଡାକିଲା । ଜହ୍ନମାମୁ ଟିକି ଭଣଜାକୁ ଭାରି ଭଲ ପାଆନ୍ତି । ସେ ସାଙ୍ଗେ ସାଙ୍ଗେ ଠେକୁଆ ପିଠିରେ ଚଢ଼ି କାହ୍ନୁ ପାଖରେ ପହଞ୍ଚିଲେ ।



ଚୀନା ଚାଷୀ ଓ ତା' ପୁଅ କ୍ଷେତରୁ ଘରକୁ ଫେରୁଛନ୍ତି

ଜହ୍ନମାମୁ କହିଲେ— କିରେ କାହ୍ନୁ ! ମୋତେ ପୁଣି ଡାକରା କାହିଁକି ?

କାହ୍ନୁ— ମାମୁ ! ତମେ ନ ହେଲେ ମୁଁ ଦେଶ ବୁଲିବି କିପରି ?

ଜହ୍ନମାମୁ— ହେଉ, ଏଥର ଆଉ ଗୋଟାଏ ନୂଆ ଦେଶ ବୁଲି ଆସିବା । ସେ ଦେଶଟିର ନାମ ଚୀନ୍ ଦେଶ ।

କାହ୍ନୁ— ତେବେ ଆଉ ମଠ କାହିଁକି ?

ଠେକୁଆ ପିଠିରେ ଜହ୍ନମାମୁଙ୍କ କୋଳରେ ବସି କାହ୍ନୁ ଓ ଜହ୍ନମାମୁ ଉତ୍ତର-ପୂର୍ବ ଦିଗକୁ ଉଡ଼ି ଉଡ଼ି ଗଲେ । କିଛିଦୂର ଯାଇ ଉପରୁ ଦେଖିଲେ ଯେ ଜଣେ ଚୀନା ଲୋକ ତା'ର ଦଶ ବର୍ଷର ପୁଅଟିକୁ ସାଙ୍ଗରେ ନେଇ ଗୋଟିଏ କେନାଲ ବନ୍ଧରେ ଚାଲି ଚାଲି ଯାଉଛି ।

କାହ୍ନୁ ଓ ଜହ୍ନମାମୁ ସେହିଠାରେ ତଳକୁ ଓହ୍ଲାଇଲେ । ଏମାନଙ୍କୁ ଦେଖି ବାପ ଓ ପୁଅ ବଡ଼ ଆଶ୍ଚର୍ଯ୍ୟ ହୋଇଗଲେ ।

ଜହ୍ନମାମୁ କହିଲେ— ଆମେ ତମ ଦେଶରେ ବୁଲିବାକୁ ଆସିଛୁ । ମୋର ଏ ଟିକି ଭଣଜାଟି ସାଙ୍ଗରେ ଆସିଛି । ତମ ଦେଶରେ ପିଲାପିଲିଙ୍କ ସାଙ୍ଗରେ ଖେଳକଉତୁକ କରିବ ।

କାହ୍ନୁ ପଚାରିଲା— ହେ ମଉସା ! ତମର ଏ ପୁଅଟିର ନାମ କଅଣ ?

ବାପା କହିଲେ— ମୋର ଏ ପୁଅଟିର ନାଁ ଚୁ । ମୋ ନାମ ଉ-ଫେଇ । ଆମେ ଆମ ଘରକୁ ଫେରୁଛୁଁ ! ଏଠାରୁ ଡାକେ ବାଟରେ ଗୋଟିଏ ସାନ ଗାଁ ପଡ଼ିବ, ସେହି ଗାଁରେ ଆମ ଘର । ଆସ, ମାମୁ ଭଣଜା ଦୁହେଁଯାକ ଆସ । ଆମ ଘରେ କୁଣିଆ ହେବ । କୁଣିଆ ଘରେ ପହଞ୍ଚିଲେ ଚୁ'ର ମା' ସରଗର ଚାନ୍ଦ ପାଇଲା ପରି ଖୁସି ହୁଏ ।

ଜହ୍ନମାମୁ— ହେଉ, ଚାଲ । ମୋର ଠେକୁଆଟି ବି ତମ ଘରେ ଆଶ୍ରା ନେବ ।

ସିନ୍ଦୂରା ନ ଫାଟୁଣୁ ବାପ ପୁଅ ଦୁହେଁଯାକ ଧାନକ୍ଷେତକୁ ଯାଇଥିଲେ । କ୍ଷେତରେ କାମ କରି ହାଲିଆ ହୋଇ ପଡ଼ିଛନ୍ତି । ଗୋଟାଏ କିଆରିରେ ଧାନତଳି ରୋଇବା ପାଇଁ କାଦୁଅ ଚକଟୁଥିଲେ । ତା'ପରେ କିଆରିରେ ଧାନତଳିଗୁଡ଼ିକ ଧାଡ଼ି ଧାଡ଼ି କରି ରୋଇଲେ ।

ଉ-ପେଙ୍ଗର ମାଣେ ହେବ ଜମି ଅଛି । ସେତକ ଜମିରେ ବଂଶଯାକ ହାଡ଼ଭଙ୍ଗା ପରିଶ୍ରମ କରି ଛଅପ୍ରାଣୀ କୁଟୁମ୍ବ ପୋଷି ହୁଅନ୍ତି ।



ଉ–ପେଙ୍ଗର ଘର

ଅଳ୍ପକ୍ଷଣ ପରେ ଚୁ, ତା'ର ବାପା, କାହ୍ନୁ ଓ ଜହ୍ନମାମୁ ଗାଁ ମୁଣ୍ଡରେ ପହଞ୍ଚିଲେ । କାହ୍ନୁ ଓ ଜହ୍ନମାମୁ ଗୋଟାଏ ଗାଡ଼ିଆ ଦେଖିଲେ । ସେଥିରେ ବତକ ଓ ହଂସସବୁ ପହଁରୁଥାନ୍ତି, ଗୁଡ଼ାଏ ଘୁଷୁରି ଓ ମଇଁଷି ଆଣ୍ଠୁଏ ପଙ୍କରେ ଲଟର ପଟର ହେଉଥାନ୍ତି ।

ଗାଁ ଭିତରେ କେତେଗୁଡ଼ିଏ ବଡ଼ ବଡ଼ ଘର ଦେଖାଗଲା । ସେଗୁଡ଼ିକ ପଥର ଓ କାଠରେ ତିଆରି । ତା'ପରେ ଗୋଟାଏ ଚାଳଘର ପଡ଼ିଲା । ଘରର କାନ୍ଥଗୁଡ଼ିକ ଧଳା କରାହୋଇଛି ।

ଉ-ପେଙ୍ଗ କହିଲା— ଏହି ମୋ ଘର ।

ଘରେ ଦୁଇଟି ଶୋଇବା ବଖରା, ଆଉ ଗୋଟିଏ ରୋଷେଇଶାଳ । ମଝିରେ ଗୋଟାଏ ସାନ ଅଗଣା । ଅଗଣାକୁ ଘେରି ରହିଛି ଗୋଟାଏ ମାଟି ପାଚେରି ।



ଉ-ଫେଙ୍ଗ୍ କାହ୍ନୁ ଓ ଜହ୍ନମାମୁଙ୍କୁ ଘର ଭିତରକୁ ଡାକିନେଲା । ଘର ଚଟାଣରେ ମସିଣା କି କମ୍ବଳ ବିଛା ହୋଇ ନ ଥାଏ । ଗୋଟାଏ ବଖରାରେ ଗୋଟାଏ ଟେବୁଲ୍ ଆଉ କେତୋଟି କାଠର ଷ୍ଟୁଲ୍ ପଡ଼ିଥାଏ ।

କାହ୍ନୁ ଓ ଜହ୍ନମାମୁଙ୍କୁ ଷ୍ଟୁଲ୍‌ରେ ବସାଇଦେଇ ଉ-ଫେଙ୍ଗ୍ ରୋଷେଇଘରକୁ ଗଲା । ତା' ପଛେ ପଛେ ଚୁ' ବି ଗଲା ।

ଘରେ ରନ୍ଧାରନ୍ଧି ସରିଥିଲା । ଉ-ଫେଙ୍ଗ୍ ଓ ଚୁ' ଦୁଇଟା ଗିନାରେ ଭାତ ଆଉ ଦୁଇ ତାଟିଆ ତରକାରି ଆଣି ଟେବୁଲ୍ ଉପରେ କାହ୍ନୁ ଓ ଜହ୍ନମାମୁଙ୍କ ସାମନାରେ ଥୋଇଲେ । ଚୁ'ର ମା' ଓ ତା'ର ସାନଭଉଣୀ ଆଉ ଦୁଇ ଗିନା ଭାତ ଓ ଦୁଇତାଟିଆ ତରକାରି ଆଣି ଚୁ' ଓ ତା'ର ବାପାଙ୍କ ସାମନାରେ ରଖିଲେ । ବାପା ବାଁହାତରେ ଗିନାଟି ଓ ଡାହାଣ ହାତରେ ଦୁଇଖଣ୍ଡ ବାଉଁଶ ପାତିଆ ଧରି ତା'ର ସାହାଯ୍ୟରେ ଭାତ ତରକାରି ମୁହଁକୁ ଉଠାଇ ଟପାଟପ୍ କରି ଖାଇଲା । ଚୁ' ଭାତଗିନାଟି ଧରି ଟେବୁଲ୍ ପାଖରୁ କିଛି ଦୂରକୁ ଯାଇ ଛିଡ଼ା ହୋଇ ଖାଇଲା । କାହ୍ନୁ ଓ ଜହ୍ନମାମୁ ବଡ଼ ଅଡୁଆରେ ପଡ଼ିଲେ । ଏପରି ଢଙ୍ଗରେ ଖାଇବାର ଅଭ୍ୟାସ ସେମାନଙ୍କର ନାହିଁ । କାହ୍ନୁ ବଡ଼ ଚତୁର ବାଳକ । ସେ ଦେଖି ଦେଖି ଶିଖିନେଲା । ଜହ୍ନମାମୁ ଥରେ ଦୁଇ ଥର ବାଉଁଶ ପାତିଆରେ ଭାତ ଉଠାଇ ମୁହଁକୁ ନେଲାବେଳକୁ ଭାତଗୁଡ଼ିକ ଟେବୁଲ୍ ଉପରେ ବୁଣି ହୋଇଗଲା ।

ତାଙ୍କୁ ବଡ଼ ସରମ ହେଲା । ତା' ବୋଲି ସେ କଣ ନ ଖାଇଲେ ? ସେ ତ ସହଜେ ପେଟୁ ଲୋକ । ଲାଜସରମ ଛାଡ଼ି ଗୁଣ୍ଡାକୁ ଗୁଣ୍ଡା ଭାତ ହାତରେ ଉଠାଇ ମୁହଁରେ ପୂରାଇଲେ ।

ଜହ୍ନମାମୁ ପଚାରିଲେ— ତମେମାନେ ମାଛ ମାଂସ ଖାଅ ତ ?

ଉ-ଫେଙ୍ଗ୍— ହଁ ଖାଉଁ । ଆମ ଦେଶରେ ଏ ଦୁଇ ଜିନିଷ ସହଜରେ ମିଳେ ନାହିଁ । ବର୍ଷରେ ଥରେ ଦୁଇଥର କେବଳ ଉତ୍ସବ ଦିନମାନଙ୍କରେ ଆମେ ଘୁଷୁରି ମାଂସ ଖାଉଁ । ଆମ ଦେଶରେ ଚରାଭୂଇଁର ଅଭାବ । ତେଣୁ ଆମେ ଗୋରୁ, ଛେଳି ଓ ମେଣ୍ଢା ପାଳୁ ନାହିଁ । ଆମ ପିଲାମାନେ ଟୋପାଏ ଦୁଧ ଖାଇବାକୁ ପାଆନ୍ତି ନାହିଁ । ମାଂସ ଖାଇବା ପାଇଁ ଆମେ ଘୁଷୁରି, କୁକୁଡ଼ା ଓ ହଂସ ପାଳୁ । ଏମାନଙ୍କ ପାଇଁ ଚରାଭୂଇଁ ଦରକାର ହୁଏ ନାହିଁ । ଆମେ କୁକୁଡ଼ା ଓ ହଂସର ଡିମ୍ବ ବି ଖାଉଁ ।

ଖାଇସାରିବା ପରେ ଚୁ'ର ମା' ଚା ଆଣିଦେଲା । ସେ ପିଆଲାରେ ସାମାନ୍ୟ ପରିମାଣ ଚା ରଖି ତା' ଉପରେ ଗରମ ପାଣି ଢାଳିଦେଲା । ଚା ଭିଜିଯିବାରୁ ଦୁଧ କି ଚିନି ନ ମିଶାଇ ଖାଲି ଚା ପାଣି କାହ୍ନୁ ଓ ଜହ୍ନମାମୁଙ୍କୁ ବଢ଼ାଇଦେଲା । କାହ୍ନୁକୁ ଏ ଚା କଷା ଲାଗିଲା । ଥରେ ଦୁଇ ଥର ଚାଖି ସେ ପିଆଲାଟି ରଖିଦେଲା । ଜହ୍ନମାମୁ ଦୁଇ ପିଆଲା ଚା ପିଇଲେ ।

କାହ୍ନୁ କହିଲା— ହେ ମାଉସୀ । ତମେ ତୁଚ୍ଛା ଚା ପାଣି ପିଅ କାହିଁକି ?

ଚୁ'ର ମା— ଆମେ ଥରକୁ ଥର ଅନେକଥର ଚା ପିଉଁ । ତେଣୁ ଆମେ ଏହି ସହଜ ଉପାୟରେ ଚା' ପାଣି ପ୍ରସ୍ତୁତ କରୁଁ ।

ଜହ୍ନମାମୁ— ତମେ ଏତେ ଚା ପାଅ କିପରି ?

ଚୁ'ର ମା— ଆମ ଦେଶରେ ବହୁତ ଚା ଚାଷ ହୁଏ । ପାହାଡ଼ର ଢାଲୁ ଅଂଶମାନଙ୍କରେ ଚା ଗଛ ଭଲ ଉଧାଏ । ଆମେ ଚା ପତ୍ର ତୋଳି ଆଣି ତାକୁ ଶୁଖାଇ ସାଇତି ରଖୁଁ ।

ଖିଆପିଆ ସରିବାରୁ ଉ-ଫେଙ୍ଗ୍, କାହ୍ନୁ ଓ ଜହ୍ନମାମୁଙ୍କୁ ଆଉ ଗୋଟିଏ କୋଠରିକୁ ଡାକିନେଲା । ଏଠାରେ ଚୁ'ର ସାନଭଉଣୀ ଘରର ଗୋଟାଏ କଣରେ ବସିଥିଲା । ତା'ର ବୟସ ଖୁବ୍ ଜୋର୍ ତିନିବର୍ଷ ହେବ । ଏଡ଼େ ଛୋଟ ଝିଅଟି ତା'ର ଦି'ମାସର ସାନଭଉଣୀକୁ ଦୁଧ ପିଆଉଥାଏ । ଏ ଦୃଶ୍ୟ ଦେଖି କାହ୍ନୁ ବଡ଼ ଆଶ୍ଚର୍ଯ୍ୟ ହୋଇଗଲା ।

ଜହ୍ନମାମୁ ପଚାରିଲେ— ଏ ଘରର ଦୁଆର ଆଗରେ ଦଉଡ଼ିରେ ଅଦା ବନ୍ଧା ହୋଇ ଝୁଲୁଛି କାହିଁକି ?

ଉ-ଫେଙ୍ଗ୍ କହିଲା— ଘରେ ପିଲା ଜନ୍ମ ହେଲେ ଆମେ ଦୁଆର ଆଗରେ ଅଦା ଏହିପରି ଝୁଲାଇ ରଖୁଁ । ଏପରି କଲେ ଭୂତପ୍ରେତ ଆଦି କଅଁଳ ପିଲାର ପାଖ ପଶି ପାରନ୍ତି ନାହିଁ । ତା' ଛଡ଼ା ପିଲା ଉପରେ କୌଣସି ଦୁଷ୍ଟ ଲୋକର ଦୃଷ୍ଟି ପଡ଼େ ନାହିଁ ।

କାହ୍ନୁ ଓ ଜହ୍ନମାମୁ ଦେଖିଲେ ଏହି କୋଠରିର ଗୋଟିଏ ପାଖରେ ଚାଷ ହତିଆର ସବୁ ଅଛି ।

ତା'ପରେ କାହ୍ନୁ ଓ ଜହ୍ନମାମୁ ରୋଷାଇଘରକୁ ଯାଇ ଦେଖିଲେ ଚୁ'ର ମା' ଗୋଟାଏ ଉଦୁଖଳରେ ଧାନ କୁଟୁଛି । ରୋଷାଇ ଘରର ଗୋଟିଏ କଣରେ ଗୁଡ଼ାଏ କୁକୁଡ଼ା ଭାଡ଼ି ଭିତରେ ଘୁମାଇଥାଆନ୍ତି ।

ଏତିକିବେଳେ ପଲେ ଘୁଷୁରି ଦାଣ୍ଡ ଦୁଆର ବାଟେ ଅଗଣାକୁ ପଶି ଆସିଲେ । କାହ୍ନୁ ଗୋଟିଏ ଘୁଷୁରି ଛୁଆକୁ ଧରି ପକାଇବା ପାଇଁ ଦଉଡ଼ିଗଲା । କିନ୍ତୁ ଘୁଷୁରିଗୁଡ଼ାକ ଏପରି ଚିଁଚିଁକିଁଚିଆ ରଡ଼ି ଛାଡ଼ିଲେ ଯେ କାହ୍ନୁ ଭୟରେ ପଳାଇ ଆସିଲା । ତା'ପରେ ଘୁଷୁରିଯାକ ଅଗଣାରେ ଶୋଇ ଘୁଙ୍ଗୁଡ଼ି ମାରିଲେ ।

ରୋଷେଇ ଘରକୁ ଲାଗି ଗୋଟିଏ ସାନ କୁଡ଼ିଆରେ ଗୋଟିଏ ମଇଁଷି ବନ୍ଧା ହୋଇଥାଏ ।

ଜହ୍ନମାମୁ ପଚାରିଲେ— ଏ ମଇଁଷି ତମେ ପାଳିଛ କାହିଁକି ?

ଉ-ଫେଙ୍ଗ୍ କହିଲା— ମଇଁଷିମାନେ ଆମ ଜମି ହଳ କରନ୍ତି ।

କାହ୍ନୁ କହିଲା— ହେ ମଉସା ! ଆମେ ତମ ଗାଁକୁ ଆସୁ ଆସୁ ବାଟରେ ଗୁଡ଼ାଏ ଧାନକ୍ଷେତ ଦେଖିଲୁଁ । ଶାଗୁଆ ରଙ୍ଗର

ଧାନଗଛଗୁଡ଼ିକ ଭାରି ସୁନ୍ଦର ଦେଖାଯାଉଥାଏ । ତମ ଦେଶରେ ଏତେ ଧାନଚାଷ ହୁଏ ?



ଚୀନା ଚାଷୀ ମଇଁଷି ସାହାଯ୍ୟରେ ହଳ କରୁଛି

ଉ-ଫେଙ୍ଗ୍— ହଁ ରେ ପୁଅ ! ଆମର ଏ ଭାତଖିଆ ଦେଶ । ଧାନଚାଷ ନ କଲେ ଭାତ ଗଣ୍ଡାଏ ଖାଇବାକୁ ମିଳିବ କାହୁଁ ?

ଜହ୍ନମାମୁ— ତମ ଦେଶର ଚାଷବାସ ଖବର ଆମକୁ ଟିକିଏ କହନ୍ତ କି ?

ଉ-ଫେଙ୍ଗ୍— ଆମେ ପ୍ରଥମେ ଗୋଟିଏ କିଆରିରେ ଧାନତଳି ପକାଉଁ । ମାସକ ଭିତରେ ଚାରା ଗଛଗୁଡ଼ିକ ହାତେ ଉଚ୍ଚ ବଢ଼ିଯାଏ । ଏତିକିବେଳେ ଗଛଗୁଡ଼ିକ ଉପାଡ଼ିନେଇ ଅନ୍ୟ କିଆରିମାନଙ୍କୁ ବୋହି ନେଉଁ । କିଆରିଗୁଡ଼ିକ ଆଗରୁ ଖତ ଦେଇ, ପାଣି ମଡ଼ାଇ ପ୍ରସ୍ତୁତ କରା ହୋଇଥାଏ । ସେଥିରେ ଚାରାସବୁ ହାତେ ହାତେ ଛଡ଼ାରେ ରୋଇଦେଉଁ ।

ଜହ୍ନମାମୁ— ଏ କାମ ତ ବଡ଼ କଷ୍ଟ କାମ ।

ଉ-ଫେଙ୍ଗ୍— ହଁ ଧାନ ରୁଆବେଳେ ଆମ କୁଟୁମ୍ବଯାକ ଏହି କାମରେ ଲାଗିପଡ଼ନ୍ତି । ଚକଟା କାଦୁଅରେ ନଇଁପଡ଼ି ଧାନ ରୋଇବା କେଡ଼େ କଷ୍ଟ ବୁଝି ପାରୁଥିବ । ଖରା ବର୍ଷାରୁ ରକ୍ଷା ପାଇବା



ଚୀନା କୃଷକମାନେ ଧାନତଳି ରୋଉଛନ୍ତି

ପାଇଁ ଆମେମାନେ ମୁଣ୍ଡରେ ଗୋଟାଏ ଗୋଟାଏ ଟୋପରି ପିନ୍ଧିଥାଉଁ । ଏଗୁଡ଼ିକ ନଡ଼ାରେ ତିଆରି ହୋଇଥାଏ । ଧାନଗଛ ବହୁତ ପାଣି ଦରକାର କରେ । ଠିକ୍ ସମୟରେ ବର୍ଷା ନ ହେଲେ ଆମକୁ ଗୋଟାଏ ପ୍ରକାର ଯନ୍ତ୍ର ସାହାଯ୍ୟରେ କେନାଲରୁ ପାଣି ଉଠାଇ ବିଲରେ ମଡ଼ାଇବାକୁ ହୁଏ ।

କାହ୍ନୁ— ଆମ ଦେଶର ଚାଷୀମାନେ ଡେଣ୍ଡାରେ ପାଣି ଉଠାଇ ଧାନକ୍ଷେତରେ ମଡ଼ାନ୍ତି ।

ଉ-ଫେଇ୍— ଧାନଗଛଗୁଡ଼ିକ ଅତିଶୀଘ୍ର ବଢ଼ିଯାଏ । ଧାନ ପାଚିଲେ ଗଛଗୁଡ଼ିକ ହଳଦିଆ ଦେଖାଯାଏ । ଏତିକିବେଳେ ଆମେ ଧାନ ଅମଳ କରୁଁ । ଗୋଛାକୁ ଗୋଛା ଧାନଗଛ ହାତମୁଠାରେ ଧରି ତାକୁ ଦା'ରେ କାଟୁଁ । ତା'ପରେ ସେଗୁଡ଼ିକ ବିଡ଼ା ବିଡ଼ା କରି ବାନ୍ଧି ଘରକୁ ବୋହି ଆଣୁଁ । ଧାନକଟାବେଳେ ଆମକୁ ନିଃଶ୍ୱାସ ମାରିବା ପାଇଁ ବି ଦଣ୍ଡେ ତର ନ ଥାଏ । କୁଟୁମ୍ବଯାକ ଏହି କାମରେ ଲାଗିପଡ଼ନ୍ତି । ତା'ପରେ ଗଧ ଓ ମଇଁଷି ଯୋଚି ଖଳାରେ ବେଙ୍ଗଳା ପକାଉଁ । ଧାନଗୁଡ଼ିକ ପାଳରୁ ଅଲଗା ହୋଇଯାଏ ।

ଏହି ଧାନକୁ ପାଛୁଡ଼ା ପାଛୁଡ଼ି କରି ଘରକୁ ନେଇଆସି ସାଇତି ରଖୁଁ । ଆମେ ଖିଏ କୁଟା ମଧ୍ୟ ଅକାରଣରେ ଫିଙ୍ଗି ଦେଉ ନାହିଁ । ଆମ ଦେଶରେ ଜାଳ ଖୁବ୍ କମ୍ ମିଳେ । ତେଣୁ କୁଟା ଜାଳି ଆମକୁ ଭାତ ରାନ୍ଧିବାକୁ ହୁଏ ।

ଜହ୍ନମାମୁ– ତମେମାନେ ଖାଲି ଧାନଚାଷ କର ନା ଆଉ କିଛି ଚାଷ କର ?

ଉ-ଫେଙ୍ଗ୍– ଆମ ଦେଶରେ କପାଚାଷ ହୁଏ । ଆମର ଲୁଗାପଟା ସବୁ କପାତୂଳାରୁ ତିଆରି ହୁଏ । ତା'ଛଡ଼ା ପାହାଡ଼ କଡ଼ମାନଙ୍କରେ ଆମେ ତୁତଗଛ ଲଗାଉଁ । ଆମେ ରେଶମ ପୋକ ପାଳୁଁ । ସେଗୁଡ଼ିକ ତୁତଗଛର ପତ୍ର ଖାଇ ବଞ୍ଚନ୍ତି । ଆମ ଦେଶରେ ବହୁତ ରେଶମ ଆଦାୟ ହୁଏ । ରେଶମ ଖୋଷାରୁ ରେଶମ ବାହାର କରି ସେଥିରେ ଲୁଗା ବୁଣିବା ଆମ ଦେଶର ଗୋଟାଏ ପ୍ରଧାନ କୁଟୀରଶିଳ୍ପ । ଆମ ଦେଶର ହଜାର ହଜାର ପରିବାର ଏହି ଶିଳ୍ପଦ୍ୱାରା ପୋଷି ହୁଅନ୍ତି ।

ଜହ୍ନମାମୁ– ତମ ଦେଶରେ ଏତେ ଧାନ ଓ କପାଚାଷ ହୁଏ; ତେବେ ତମର ଦାନା କନାର କିଛି ଅଭାବ ନାହିଁ ।

ଉ-ଫେଙ୍ଗ୍– ନା, ତା'ନୁହେଁ । ଆମ ଦେଶରେ ଏତେ ଲୋକ ଯେ ସମସ୍ତଙ୍କୁ ଖାଦ୍ୟ ଯୋଗାଇବା ସହଜ କଥା ନୁହେଁ । ଦେଶର କୋଟି କୋଟି ଲୋକଙ୍କୁ ଖାଦ୍ୟ ଯୋଗାଇବା ପାଇଁ ଆମ ଦେଶରେ ଏତେ ଜମି ଚାଷ ହୁଏ ଯେ, ଅନେକ ଲୋକଙ୍କୁ ଘର ତିଆରି କରିବା ପାଇଁ ସ୍ଥାନ ମିଳେ ନାହିଁ । ତେଣୁ ସେମାନେ ଛୁଆପିଲା ଘେନି ନଈ ଉପରେ ବଡ଼ ବଡ଼ ନୌକାରେ ଚିରକାଳ ବାସ କରନ୍ତି । ଦୂରରୁ ଦେଖିଲେ ଜଣାଯାଏ ସତେ କି ଘରଗୁଡ଼ିକ ନଈ ଉପରେ ଭାସୁଛି । ଏହି ଭାସମାନ ଘରଗୁଡ଼ିକ ଏତେ ବଡ଼ ଯେ ସେଥିରେ ଏକାଠି କେତେଗୁଡ଼ିଏ ପରିବାର ରହନ୍ତି । ସେମାନଙ୍କୁ ସ୍ଥଳଭାଗକୁ ଆଦୌ ଆସିବାକୁ ହୁଏ ନାହିଁ । ଚାଉଳ, ପନିପରିବା ଆଉ ଯାହା କିଛି ଜିନିଷ ଦରକାର ହୁଏ, ସେସବୁ ବ୍ୟବସାୟୀମାନେ ନୌକାରେ ଆଣି ସେମାନଙ୍କ ପାଖରେ ପହଞ୍ଚାଇ ଦିଅନ୍ତି ।

ଜହ୍ନମାମୁ— ତମେ ଯେପରି ପୋଷାକ ପିନ୍ଧିଛ, ସେହିପରି ପୋଷାକ ତମ ଦେଶର ଆଉ ସମସ୍ତେ କ'ଣ ପିନ୍ଧନ୍ତି ?

ଉ-ଫେଙ୍ଗ୍— ଆମ ଦେଶର ପୁରୁଷ ଓ ସ୍ତ୍ରୀ ସମସ୍ତେ ଢିଲା ପାଇଜାମା ପିନ୍ଧନ୍ତି । ଆଉ ପାଇଜାମା ଉପରେ ଖଣ୍ଡେ ଖଣ୍ଡେ କୁର୍ତ୍ତା ପିନ୍ଧିଥାଆନ୍ତି । ଧନୀଲୋକମାନେ ରେଶମର ପୋଷାକ ପିନ୍ଧନ୍ତି । ସାଧାରଣ ଲୋକେ କପାତୂଳାରେ ତିଆରି ପୋଷାକ ପିନ୍ଧନ୍ତି । ଶୀତଦିନରେ ଏ ଦେଶରେ ଭୟଙ୍କର ଶୀତ ହୁଏ । ସେତେବେଳେ ଆମେମାନେ ଗୋଟାକ ଉପରେ ଆଉ ଗୋଟିଏ ଏହିପରି ତିନି ଚାରିଟା କୁର୍ତ୍ତା ପିନ୍ଧୁ । କେହି କେହି ତୂଳାଭରା ପତଳା ଗଦିରେ କୋଟ୍ ତିଆରି କରି ପିନ୍ଧନ୍ତି । ଏପରି କୋଟ୍ ଯେପରି ନରମ ସେହିପରି ଗରମ ମଧ୍ୟ ହୁଏ ।

କାହ୍ନୁ ଉ-ଫେଙ୍ଗର ଜୋତାକୁ ଅନାଇ ପଚାରିଲା— ହେ ମଉସା ! ତମର ଏ ଜୋତା କାହିଁରେ ତିଆରି ହୋଇଛି ?

ଉ-ଫେଙ୍ଗ୍— ଏ ଜୋତା, ଘାସ ଓ ଦଉଡ଼ିରେ ତିଆରି ହୋଇଛି । ଆମ ଦେଶରେ ପଶୁ ବେଶୀ ନାହାନ୍ତି । ଚମଡ଼ା ମିଳିବ କାହୁଁ ?

କାହ୍ନୁ ଜହ୍ନମାମୁଙ୍କୁ କହିଲା— ଦେଖୁଛ ତ ମାମୁ ! ଏ ଲୋକଗୁଡ଼ିକ କେଡ଼େ ବାଙ୍ଗରା !

ଜହ୍ନମାମୁ— ହଁ ଏ ଜାତିର ଲୋକେ ବେଶୀ ଡେଙ୍ଗା ହୁଅନ୍ତି ନାହିଁ । ଏମାନଙ୍କ ମୁହଁ ଗୋଲ, ନାକ ଚେପ୍ଟା, ଆଖି ଛୋଟ । ଆଉ ଦେଖ, ଏମାନଙ୍କ ଦେହର ରଙ୍ଗ ଧଳା ନୁହେଁ, କି କଳା ନୁହେଁ, ଅଳ୍ପ ହଳଦିଆ । ଏମାନେ ଭାରି କାମିକା ଲୋକ । ଛୁଆପିଲା, ସ୍ତ୍ରୀ ପୁରୁଷ ସମସ୍ତେ କାମରେ ଲାଗିଥାନ୍ତି । ଦଣ୍ଡେ ହେଲେ କେହି ତୁଛାକୁ ବସି ରହନ୍ତି ନାହିଁ ।

କଥା କହୁଁ କହୁଁ ଅଧରାତି ହୋଇଗଲା । କାହ୍ନୁକୁ ନିଦ ଘାରିଲା ।

ଉ-ଫେଙ୍ଗ୍ କହିଲା— ଆସ, ତମେ ଦୁହେଁ ଆସ । ଏହି ଘରେ ଶେଯ ପଡ଼ିଛି, ଶୋଇବ ।

କାହ୍ନୁ ଓ ଜହ୍ନମାମୁ ଶୋଇବାକୁ ଗଲେ । ଉ-ଫେଙ୍ଗ୍ ସେମାନଙ୍କ ଠାରୁ ବିଦାୟ ନେଇ ଆଉ ଗୋଟିଏ କୋଠରିକୁ ଶୋଇବାକୁ ଗଲା । ସେତେବେଳକୁ ତା' କୁଟୁମ୍ବଯାକ ନିଘୋଡ଼ ନିଦରେ ଶୋଇପଡ଼ିଥିଲେ ।

କୁଆ କା' ନ କରୁଣୁ ଉ-ଫେଙ୍ଗ୍ ଓ ତା' ବଂଶଯାକ ନିଦରୁ ଉଠି ଯେଝା କାମରେ ଲାଗିଗଲେ । ଚୁ'ର ମା' ତରତର ହୋଇ ବାସିପାଇଟି ସାରିଦେଲା । ତା'ପରେ ଜଳଖିଆ ତିଆରି କରିବା ପାଇଁ ରୋଷେଇ ଘରକୁ ଗଲା । ଚୁ'ର ସାନ ଭଉଣୀ କୁକୁଡ଼ା ଓ ବତକଗୁଡ଼ିକ ଭାଡ଼ି ଭିତରୁ ବାହାର କରିଦେଲା । ଚୁ'ଘୁଷୁରି ପଲକୁ ଅଗଣା ଭିତରୁ ପଦାକୁ ଅଡ଼େଇ ଦେଲା । ଚୁ'ର ବାପା ମଇଁଷି କାନ୍ଧରେ ଯୁଆଳି ବାନ୍ଧି ବିଲକୁ ଯିବାପାଇଁ ସଜବାଜ ହେଲା । ଦି'ମାସର ସାନ ଝିଅଟିର କାମଦାମ କିଛି ନଥାଏ । ସେ ଖାଲି କାଉଁ କାଉଁ କରି କାନ୍ଦି ଘରଦୁଆର କମ୍ପାଉଥାଏ । ତା' ରଡ଼ିରେ କାହ୍ନୁ ଓ ଜହ୍ନମାମୁଙ୍କ ନିଦ ଭାଙ୍ଗିଗଲା ।

ଚୁ'ର ମା' ଏତେବେଳକୁ ଜଳଖିଆ ତିଆରି କରି ସାରିଲାଣି । ଜଳଖିଆ କ'ଣ କି ସିମେଇ ଖିରି ଆଉ ଗଜା । ସେ ଗହମ ଅଟାରେ କୁକୁଡ଼ା ଅଣ୍ଡା ମିଶାଇ ତାକୁ ସୂତାପରି ସରୁ ସରୁ ବଳି ଖରାରେ ଶୁଖାଇ ରଖିଥାଏ । ତାକୁ ଗରମ ପାଣିରେ ଅଳ୍ପ ସିଝାଇ ଦେଲେ ଖିରି ହୁଏ । ଅଟାକୁ ପାଣିରେ ଗୋଳାଇ ସେ ସେଥିରୁ ସାନ ସାନ ଚକତି ତିଆରି କରେ । ଚକତିଗୁଡ଼ିକ ସେକି ତାକୁ ଚିନିପାଗ କଲେ ଗଜା ତିଆରି ହୁଏ ।

ଚୁ'ର ମା' ଏହି ଜଳଖିଆ ଆଣି କାହ୍ନୁ ଓ ଜହ୍ନମାମୁଙ୍କୁ ଖାଇବାକୁ ଦେଲା । ଏ ନୂଆପ୍ରକାର ଜଳଖିଆ ସେମାନଙ୍କୁ ଭାରି ଭଲ ଲାଗିଲା । ତା'ପରେ ଚୁ'ର ମା' ଦୁଇ ପିଆଲା ଚା' ଆଣିଦେଲା ।

ଉ-ଫେଙ୍ଗ୍ ଜଳଖିଆ ଖାଇ ବିଲକୁ ବାହାରିଲା । ଚୁ'କୁ ଡାକି କହିଲା— ରେ ପୁଅ ! ତୁ ଆଜି ମୋ ସାଙ୍ଗରେ ଯିବୁ ନାହିଁ । ଘରେ ଦୁଇଜଣ ଅତିଥି ଅଛନ୍ତି । ଏମାନଙ୍କୁ ସାଙ୍ଗରେ ନେଇ ଆଖପାଖରେ ବୁଲାଇ ଆଣିବୁ ।

ଚୁ ସାଙ୍ଗରେ କାହ୍ନୁ ଓ ଜହ୍ନମାମୁ ବୁଲିବାକୁ ବାହାରିଲେ । ଗାଁକୁ ଗାଁ ଅନେକଗୁଡ଼ିଏ ଗାଁ ଭିତର ଦେଇ ସେମାନେ ଯିବାକୁ ଲାଗିଲେ । ଗାଁ ଶେଷମୁଣ୍ଡରେ ଖାଲି ଧାନକ୍ଷେତ ଆଉ ବାଉଁଶବୁଦା ଦେଖା ଯାଉଥାଏ । ଏତେ ବାଉଁଶଗଛ ଦେଖି ଜହ୍ନମାମୁ ଚୁ'କୁ ପଚାରିଲେ— ଏଗୁଡ଼ାକ ତମର କି କାମରେ ଲାଗେ ?

ଚୁ କହିଲା— ବାଉଁଶ ଆମ ଦେଶର ଅତି ଦରକାରୀ ଜିନିଷ । ଏଥିରେ ଆମେ ପାଛିଆ ଟୋକେଇ ବୁଣୁଁ । ଘର ତିଆରି କରିବା ପାଇଁ ବାଉଁଶ ଦରକାର ହୁଏ । ବାଉଁଶରେ ଆମେ ଘରର ନାନା ପ୍ରକାର ସରଞ୍ଜାମ ତିଆରି କରୁଁ । ଆମ ଦେଶର ନାଉରିମାନେ ବାଉଁଶରେ ନାଆ ପ୍ରସ୍ତୁତ କରନ୍ତି । ତା'ଛଡ଼ା ବାଉଁଶ କନ୍ଦା ଆମର ଅତି ଉପାଦେୟ ଖାଦ୍ୟ ।

ଗାଁ ଗଣ୍ଡା ପାରି ହୋଇଯାଇ ସେମାନେ ଗୋଟାଏ ବଡ଼ ସଡ଼କ ରାସ୍ତାରେ ପହଞ୍ଚିଲେ । ସଡ଼କରେ ଖଣ୍ଡେଦୂର ଯାଇ ଦେଖିଲେ ଗୋଟାଏ ପ୍ରକାଣ୍ଡ କୋଠାଘର । ଏ ଘରେ ଧାଡ଼ିକି ଧାଡ଼ି ବଡ଼ ବଡ଼ ଝରକା ଓ କବାଟ ଲାଗିଛି । ଘରର ଛାତ ଚାରିପାଖରେ ଅଧପୁରୁଷେ ଉଚ୍ଚର ପାଚେରି ବୁଲିଛି ।

କାହ୍ନୁ କହିଲା— ହେ ଚୁ ଭାଇ ! ଏଡ଼େ ବଡ଼ ଘରଟା କାହାର ?

ଚୁ— ଏ ଘରଟି ଗୋଟିଏ ସ୍କୁଲ ଘର । ଏଥିରେ ପାଞ୍ଚଶହ ସରିକି ପିଲା ପାଠ ପଢ଼ନ୍ତି ।

ଚନ୍ଦ୍ରମାମୁ— ଚାଲ, ସ୍କୁଲକୁ ଯିବା । ତମ ଦେଶର ପିଲାଏ କିପରି ପାଠ ପଢ଼ନ୍ତି ଦେଖିଯିବା ।



ଚୀନାପିଲାମାନେ ସ୍କୁଲରେ ପାଠ ପଢୁଛନ୍ତି

ସେମାନେ ସ୍କୁଲର ସବା ତଳ କ୍ଲାସରେ ଯାଇ ପହଞ୍ଚିଲେ । ବାହାରୁ ଦେଖିଲେ କଳାପଟାରେ କେତେଗୁଡ଼ିଏ ଅଦ୍ଭୁତ ପ୍ରକାରର

ଚିହ୍ନ ଲେଖାହୋଇଛି । ପିଲାମାନେ ସେଗୁଡ଼ିକ ନିଜ ନିଜ ଖାତାରେ ତୂଳୀ ସାହାଯ୍ୟରେ ଆଙ୍କୁଛନ୍ତି ।

ମାଷ୍ଟର କାହ୍ନୁ ଓ ଜହ୍ନମାମୁଙ୍କୁ କ୍ଲାସ ଭିତରକୁ ଡାକିନେଲେ । ଚୁ ବାହାରେ ରହିଲା । ସେ ପାଠ ଶାଠ କିଛି ପଢ଼ିନାହିଁ । ପାଠପଢ଼ା କଥା ବୁଝିବ ଅବା କଅଣ ?

 କାହ୍ନୁ ଭାବିଥିଲା ପିଲାମାନେ ଚିତ୍ର ଆଙ୍କୁଛନ୍ତି । କିନ୍ତୁ ତା' ନୁହେଁ । ମାଷ୍ଟର କହିଲେ ସେମାନେ ଗୋଟିଏ ଗୋଟିଏ ଶବ୍ଦ ଲେଖୁଛନ୍ତି ।

ଓଡ଼ିଆ ପରି ଚୀନ୍ ଭାଷାରେ ୫୦ଟି ଅକ୍ଷର ନାହିଁ । ଏ ଭାଷାରେ ପ୍ରତ୍ୟେକ ଶବ୍ଦ ପାଇଁ ଅଲଗା ଅଲଗା ଚିହ୍ନ ଅଛି । ଏଗୁଡ଼ିକ କଲମରେ ଲେଖିହୁଏ ନାହିଁ । ତୂଳୀରେ ଆଙ୍କିବାକୁ ହୁଏ । ଆମେମାନେ ଯେପରି ବାଁ ଦିଗରୁ ଆରମ୍ଭ କରି ଡାହାଣ ଦିଗକୁ ଧାଡ଼ି ଧାଡ଼ି କରି ବହି ପଢ଼ୁଁ, ଚୀନାମାନେ ସେପରି ପଢ଼ନ୍ତି ନାହିଁ । ସେମାନେ ପୃଷ୍ଠାର ଉପର ଆଡ଼ୁ ଆରମ୍ଭ କରି ସଳଖ ଭାବରେ ତଳଆଡ଼କୁ ପଢ଼ନ୍ତି । ସେମାନେ ପୃଷ୍ଠାର ଉପର ଭାଗର ଡାହାଣ ଦିଗରୁ ପଢ଼ିବାକୁ ଆରମ୍ଭ କରନ୍ତି ଏବଂ ବାଁ' ଦିଗକୁ ଧାଡ଼ି ଧାଡ଼ି କରି ପଢ଼ି ବାଁ' ଦିଗର ସବାତଳ କୋଣରେ ପଢ଼ା ଶେଷ କରନ୍ତି । ସେମାନଙ୍କ ଲେଖାର ରୀତି ମଧ୍ୟ ଏହିପରି— ଉପରୁ ତଳଆଡ଼କୁ ।

日 ସୂର୍ଯ୍ୟ | 人 ମଣିଷ
月 ଚନ୍ଦ୍ର | 大 ବଡ଼
水 ଜଳ | 天 ସ୍ୱର୍ଗ
火 ଅଗ୍ନି | 早 ଶୀଘ୍ର

କିଛିକ୍ଷଣ ପରେ ସ୍କୁଲର ଖେଳଛୁଟି ଘଣ୍ଟା ଢଂ ଢଂ କରି ବାଜିଲା । ପିଲାମାନେ ପାଟିତୁଣ୍ଡ କରି କ୍ଲାସରୁ ବାହାରି ଆସିଲେ । ଦୌଡ଼ି ଦୌଡ଼ି ଯାଇ ସମସ୍ତେ ଖେଳପଡ଼ିଆରେ ରୁଣ୍ଡ ହେଲେ । କେତେକ ପିଲା ଦୋଳିରେ ଝୁଲିଲେ । କେତେକ ଖଣ୍ଡେ ଗଡ଼ାଣିଆ ପଟାର ଉପର ମୁଣ୍ଡକୁ ଉଠି ସେଠାରୁ ତଳକୁ ଖସି ଖସି ଆସୁଥାନ୍ତି । ଆଉ କେତେକ ସି-ସ ଖେଳରେ ମାତିଗଲେ । ଦଳେ ପିଲା ଚକାଚକା ଭଉଁରି ଖେଳ ଖେଳିବାକୁ ଲାଗିଲେ ।



ପିଲାମାନେ ସି-ସ ଖେଳୁଛନ୍ତି

କାହ୍ନୁ ପିଲାଙ୍କ ଖେଳକୁ ଏକ ଧ୍ୟାନରେ ଅନାଇ ରହିଥାଏ ।

ଚୁ' କହିଲା — ଏ ଖେଳଗୁଡ଼ିକ ସ୍କୁଲ ପିଲାମାନେ ବେଶି ଖେଳନ୍ତି । ଘୁଡ଼ୀ ଉଡ଼ାଇବା ଆମ ଦେଶର ଗୋଟାଏ ବଡ଼ ଖେଳ । ଖାଲି ଯେ ପିଲାମାନେ ଘୁଡ଼ୀ ଉଡ଼ାନ୍ତି ତା' ନୁହେଁ । ବର୍ଷକରେ ଦିନେ ଘରର ବଡ଼ ସାନ ସମସ୍ତେ ଘୁଡ଼ୀ ଉଡ଼ାନ୍ତି । ସେ ଦିନଟା ଆମର ଗୋଟାଏ ଉତ୍ସବ ଦିନ । ଆମେ ଭିନେ ଭିନେ ରଙ୍ଗର ଓ ଭିନେ ଭିନେ ଆକାରର ଘୁଡ଼ୀ ତିଆରି କରୁଁ । କେତେକ ଘୁଡ଼ୀର ଆକାର ବାଦୁଡ଼ି ପରି, ଆଉ କେତେକ ଘୁଡ଼ୀର ଆକାର ମାଛ ବା ଅନ୍ୟ କୌଣସି ପ୍ରାଣୀପରି ହୋଇଥାଏ ।

କାହ୍ନୁ— ଆମ ଦେଶରେ ବି ଘୁଡ଼ୀ ଉଡ଼ାଇବା ଗୋଟାଏ ବଡ଼ ଖେଳ ।



ଚୀନ୍ ଦେଶର ଘୁଡ଼ୀଉଡ଼ା ଉତ୍ସବ

ଚୁ— ଆମ ଦେଶରେ ଆଉ ଗୋଟାଏ ଦୁଇଟା ଉତ୍ସବ ସମସ୍ତେ ପାଳନ୍ତି । ନୂଆ ବର୍ଷର ପ୍ରଥମ ପୂନେଇ ଦିନ ଆଲୋକ ଉତ୍ସବ ହୁଏ । ସେଦିନ ରାତିରେ ଭିନେ ଭିନେ ଆକାର ଓ ପ୍ରକାରର ଲଣ୍ଠନ ସବୁ ରାସ୍ତାକଡ଼ରେ ଓ ଦୁଆର ମୁହଁରେ ଝୁଲାଇ ଦିଆଯାଏ । ଆଉ ଗୋଟିଏ ପର୍ବଦିନ ହେଉଛି ବୋଇତ ବନ୍ଦାଣ । ଗ୍ରୀଷ୍ମକାଳରେ ଏ ପର୍ବଟି ଆମେ ପାଳୁଁ । ନଈରେ ଓ ସମୁଦ୍ରରେ ଆମର ଯେତେ ନାଆ ଓ ଜାହାଜ ଭାସୁଥାଏ, ସେସବୁକୁ ସଜାସଜି କରି ବନ୍ଦାଉଁ । ଏ ଦୁଇ ଉତ୍ସବରେ ସମସ୍ତେ ଖୁବ୍ ମଉଜ ମଜଲିସ୍ କରନ୍ତି ।

ଚନ୍ଦ୍ରମାମୁ କହିଲେ— ରେ କାହ୍ନୁ ! ବେଳ ଉଛୁର ହେଲାଣି । ଚାଲ, ଏହିଠାରୁ ଫେରିଯିବା । ଆଉ କେତେ ବୁଲିବା ?

ଚୁ କହିଲା— ଆଉ ଅଳପ ବାଟ ଗଲେ ଗୋଟାଏ ଧର୍ମମନ୍ଦିର ପଡ଼ିବ । ମନ୍ଦିରଟା ଦେଖିଯିବ ନାହିଁ ?



ଚୀନ୍ ଦେଶର ପାଗୋଡ଼ା ଓ ପୁରୋହିତ

କାହ୍ନୁ କହିଲା— ଚନ୍ଦ୍ରମାମୁ ମୋଟା ମଣିଷ । ସେ ବେଶି ବାଟ ଚାଲିପାରନ୍ତି ନାହିଁ । ଏତେ ବାଟ ଚାଲି ଚାଲି ଆସି ଥକି ପଡ଼ିଲେଣି ।

ଚନ୍ଦ୍ରମାମୁ— ହେଉ, ଚାଲ । ଧୀରେ ଧୀରେ ଚାଲ । ମନ୍ଦିରଟା ଦେଖି ନଗଲେ କାହ୍ନୁର ମନ ଫିକା ପଡ଼ିଯିବ ।

କାହ୍ନୁ ଓ ଜହ୍ନମାମୁ ଚୁ ସାଙ୍ଗରେ ଆଉ କିଛିଦୂର ଆଗକୁ ଗଲେ । ଦୂରରୁ ଗୋଟିଏ ମନ୍ଦିରର ଶିଖ ଦେଖାଗଲା । ଚାଲି ଚାଲି ବାଟ ସରୁନାହିଁ । ମନ୍ଦିରଟା ଯେପରିକି ଘୁଞ୍ଚି ଘୁଞ୍ଚି ଯାଉଛି ।

ଚୁ କହୁଥାଏ — ଆଉ ଡାକେ ବାଟ ଆସ । ମନ୍ଦିରଟା ପରା ହେଇ ପାଖରେ ଦେଖାଗଲାଣି !

ଶେଷରେ ସମସ୍ତେ ଯାଇ ମନ୍ଦିର ପାଖରେ ପହଞ୍ଚିଲେ ।

ଅଧିକାଂଶ ଚୀନାଲୋକଙ୍କର ଧର୍ମ ବୌଦ୍ଧଧର୍ମ । ଏମାନଙ୍କ ଧର୍ମମନ୍ଦିରଗୁଡ଼ିକୁ ପାଗୋଡ଼ା କହନ୍ତି । ପାଗୋଡ଼ାଗୁଡ଼ିକର ଅଗ୍ରଭାଗ କ୍ରମେ କ୍ରମେ ସୂକ୍ଷ୍ମ ହୋଇ ବହୁତ ଉଚ୍ଚକୁ ଉଠିଥାଏ । ଚୀନ୍ ଦେଶରେ ହଜାର ହଜାର ପାଗୋଡ଼ା ଅଛି । ପାଗୋଡ଼ାରେ ବୁଦ୍ଧଦେବଙ୍କର ମୂର୍ତ୍ତି ଅତି ଯତ୍ନରେ ରଖା ହୋଇଥାଏ । ବୌଦ୍ଧ ପୁରୋହିତମାନେ ପାଗୋଡ଼ାରେ ରହନ୍ତି । ସେମାନେ ଗେରୁଆ ଲୁଗା ପିନ୍ଧନ୍ତି, ମୁଣ୍ଡ ନଣ୍ଡା ହୁଅନ୍ତି ଓ ସାରା ଜୀବନ ବ୍ରହ୍ମଚାରୀ ରହନ୍ତି । ଧର୍ମଚର୍ଚ୍ଚା କରିବା ସେମାନଙ୍କର ପ୍ରଧାନ କାମ । ଜହ୍ନମାମୁ ଆଉ ଅଧିକ ଦୂର ଯିବାକୁ ଅମଙ୍ଗ ହେଲେ । ତେଣୁ ତିନିହେଁଯାକ ଘରମୁହାଁ ହୋଇ ଫେରିଲେ । ବାଟରେ ଆସୁ ଆସୁ ଚୁ କହିଲା — ଆମ ଦେଶର ଆଉ ଗୋଟାଏ ଅଦ୍ଭୁତ ଜିନିଷ ତମେମାନେ ଦେଖିଯାଇ ପାରିଲ ନାହିଁ । ସେଥିପାଇଁ ମୋ ମନରେ ଦୁଃଖ ହେଉଛି ।

କାହ୍ନୁ ପଚାରିଲା — ତାହା କଅଣ ?

ଚୁ — ଆମ ଦେଶର ପ୍ରକାଣ୍ଡ ପାଚେରି । ଏଡ଼େ ବଡ଼ ପାଚେରି ପୃଥିବୀରେ ଆଉ ନାହିଁ । ଏହି ପାଚେରି ପନ୍ଦର ଶହ ମାଇଲ ଲମ୍ବା, ଉପର ଅଂଶର ଚଉଡ଼ା ପଚିଶ ଫୁଟ । ଉଚ୍ଚାରେ ବି କମ୍ ନୁହେଁ — ହାରାହାରି ୨୨ ଫୁଟ ଉଚ୍ଚ । ମଝିରେ ମଝିରେ ୪୦ରୁ ୬୦ ଫୁଟ ଉଚ୍ଚର ବୁରୁଜମାନ ଅଛି । ଏଥିରେ ସୈନ୍ୟମାନେ ରହନ୍ତି । ବାରୁଦ ମଧ୍ୟ ରଖାଯାଏ ।

ଜହ୍ନମାମୁ — ଏଡ଼େ ବଡ଼ ପାଚେରି ତିଆରି ହେଉଥିଲା କାହିଁକି ?

ଚୁ — ମଧ୍ୟ-ଏସିଆର ଦୁର୍ବୃତ୍ତମାନଙ୍କ ଆକ୍ରମଣରୁ ଚୀନ୍‌କୁ ରକ୍ଷା କରିବା ପାଇଁ ଅତି ପୁରୁଣା କାଳରେ ଏ ପାଚେରି ତିଆରି ହୋଇଥିଲା ।

ପୃଥିବୀର ସାତଗୋଟି ଆଶ୍ଚର୍ଯ୍ୟ ଜିନିଷମାନଙ୍କ ମଧ୍ୟରୁ ଚୀନ୍‌ର ଏହି ପ୍ରକାଣ୍ଡ ପ୍ରାଚୀର ଗୋଟିଏ ।



ଚୀନର ପ୍ରକାଣ୍ଡ ପ୍ରାଚୀର

କାହ୍ନୁ— ସତେ ! ଆମେ ଏ ଅଦ୍ଭୁତ ଜିନିଷଟା ଦେଖିଯାଇ ପାରିବୁ ନାହିଁ ?

ଜହ୍ନମାମୁ— ହଇରେ କାହ୍ନୁ ! ଦୁନିଆରେ ଯେତେ ଜିନିଷ ଅଛି ସବୁ କ'ଣ ତୁ ଏକାବେଳକେ ଦେଖିବୁ ? ଆଉ ଥରେ କେବେ ଏ ଦେଶକୁ ଆସିଲେ ଏ ପାଚେରିଟା ଆଗ ଦେଖିବୁ । ମୁଁ ପରା ବାଟ ଚାଲି ଚାଲି ହାଲିଆ ହୋଇ ପଡ଼ିଲିଣି । ଆଉ ପାହୁଣ୍ଡେ ବାଟ ଯିବାକୁ ବି ପାଦ ଉଠୁନାହିଁ । ତା'ପରେ ପୁଣି ଭୋକରେ ପେଟ ଜଳିଲାଣି ।

କାହ୍ନୁ— ହେଉ, ମାମୁ ! ତମେ ବୁଢ଼ା ଲୋକ । ବାଟଚଲା ତୁମକୁ ବାଧିଲାଣି । ହେ ଚୁ ଭାଇ ! ଆମକୁ ଗୋଟାଏ ପାଖବାଟ ଦେଇ ନେଇ ଯା ।

ଚୁ ଗୋଟିଏ ହିଡ଼ ବାଟରେ କାହ୍ନୁ ଓ ଜହ୍ନମାମୁଙ୍କୁ ନେଇଗଲା । ଅନେକ ବାଟ କଟିଗଲା । ବେଳ ରତରତ ସମୟକୁ ତିନିହେଁ ଉ-ଫେଙ୍ଗ୍ ଘରେ ପହଞ୍ଚିଲେ । ଉ-ଫେଙ୍ଗ୍ ସେତେବେଳକୁ ବିଲରୁ ଫେରିଆସି ଅତିଥି ଦୁଇଜଣଙ୍କୁ ଅପେକ୍ଷା କରି ବସିଥାଏ ।

କାହ୍ନୁ ଓ ଜହ୍ନମାମୁ ଆସି ପହଞ୍ଚିବା ମାତ୍ରେ ଖିଆପିଆର ଆୟୋଜନ ହେଲା ।

ଚୁ'ର ମା' ଭାତ ଆଉ ଘୁଷୁରି ମାଂସର ତରକାରି ପରଷିଗଲା । ଜହ୍ନମାମୁ ଖାଉଁ ଖାଉଁ ଚୁ'ର ମା'କୁ କହିଲେ– ତମର ଏ ମାଉଁସ ତରକାରି ଖୁବ୍ ସୁଆଦିଆ ଲାଗୁଛି । ଏଥିରେ ପରିବା ବି ପଡ଼ିଛି ।

ଚୁ'ର ମା'– ହଁ, ଆମେ ମାଉଁସରେ ପରିବା ପକାଇ ରାନ୍ଧୁ । ପରିବାଗୁଡ଼ିକ ସାନ ସାନ କରି କାଟିଦେଉଁ । ତରକାରି ସାଙ୍ଗରେ ସେଗୁଡ଼ିକ ମିଶିଯାଏ । କାଠିରେ ଉଠାଇ ଖାଇବାକୁ ସୁବିଧା ହୁଏ ।

ଜହ୍ନମାମୁଙ୍କୁ ଭାରି ଭୋକ ହେଉଥିଲା । ସେ ଆକଣ୍ଠ ଭୋଜନ କଲେ । ଖାଇସାରି ସମସ୍ତେ ଚା' ପିଇଲେ ।

ଖିଆପିଆ ସରିବାରୁ କାହ୍ନୁ ଉ-ଫେଙ୍ଗ୍‌କୁ କହିଲା– ହେ ମଉସା ! ତମ ଦେଶର ଗୋଟାଏ ଗପ କହନ୍ତ କି, ଆମେ ଶୁଣନ୍ତୁ ।

ଉ-ଫେଙ୍ଗ୍– ହେଉ, ଜଣେ ଅନ୍ଧ ଭିକାରି ପିଲା କଥା କହିବି । ତୋ ମନକୁ ପାଇବ ତ ?

କାହ୍ନୁ– ପିଲାଙ୍କ କଥା ଶୁଣିବାକୁ ମୋର ଭାରି ସଉକ ।

ଉ-ଫେଙ୍ଗ୍– ତେବେ କହୁଛି ଶୁଣ ।

ଚୀନ୍ ଦେଶରେ ଜଣେ ବାଳକ ଥିଲା । ତା' ନାମ ଲୋ-ସାନ୍ । ଜନମରୁ ସେ ଅନ୍ଧ ।

ତା' ବାପ ଭାବିଲା, ଏ ଅନ୍ଧ ପିଲାଟା ମୋର କି କାମ କରିବ ? ଏହାକୁ ଖୁଆଇ ପିଆଇ ଅକାରଣେ ପୋଷିବି ସିନା ।

ତହୁଁ ସେ ପୁଅକୁ କହିଲା– ତୁ ମୋର ଘରେ ରହି କ'ଣ କରିବୁ ? ଘରୁ ବାହାରି ଯା, ଭିକ ମାଗି ଖାଇବୁ ।

ଅନ୍ଧ ବାଳକଟିକୁ ମୁଣ୍ଡ ଗୁଞ୍ଜିବାକୁ କେଉଁଠାରେ ହେଲେ ସ୍ଥାନ ମିଳିଲା ନାହିଁ । ସେ ଦ୍ୱାର ଦ୍ୱାର ହୋଇ ଭିକ ମାଗି ବୁଲିଲା ।

ତା'ର ସାହା ଭରସା କେହି ନ ଥାଏ । ତା'ର ଗୋଟିଏ କୁକୁର ଥାଏ । କୁକୁରଟିର ନାଁ ଫାନ୍ । ଏହି କୁକୁରଟି ତା'ର ଏକମାତ୍ର ବିଶ୍ୱସ୍ତ ବନ୍ଧୁ ।

ଫାନ୍ ତା'ର ଟିକି ମୁନିବକୁ ଭାରି ଭଲପାଏ । ମୁନିବ ଯୁଆଡ଼େ ଯାଏ ତା' ସାଙ୍ଗେ ସାଙ୍ଗେ ଫାନ୍ ବି ଯାଏ ।

ଲୋ-ସାନ୍ ସବୁବେଳେ ଖଣ୍ଡେ ବାଡ଼ି ହାତରେ ଧରିଥାଏ । ବାଡ଼ି ଖଣ୍ଡିକ ଠୁକୁରୁ ଠୁକୁରୁ କରି ରାସ୍ତାରେ ଯାଏ । ଆବଡ଼ା-ଖାବଡ଼ା ରାସ୍ତା ପଡ଼ିଲେ ଫାନ୍ ତାକୁ ଅତି ସାବଧାନ ହୋଇ ବାଟ କଢ଼ାଇ ନିଏ । ଫାନ୍ ସାଙ୍ଗରେ ନ ଥିଲେ ତା' ମୁନିବ ରାସ୍ତାରେ କେତେ ଯେ କଚଡ଼ା ଖାଉଥାନ୍ତା ତାର ଠିକଣା ନାହିଁ ।

ଫାନ୍ ଭାରି ଚତୁର କୁକୁର । ତା' ମୁନିବ ପାଇଁ ସେ ଦି'ପଇସା ରୋଜଗାର ବି କରେ । ଲୋ-ସାନ୍ ତିନିଥର ହାତତାଳି ମାରେ । ଫାନ୍ କ'ଣ କରେ ନା ହାମୁଡ଼ି ପଡ଼ି ଭୂଇଁରେ ମୁଣ୍ଡ ଲଗାଇଦିଏ । ଏ କୌଶଳ ଦେଖି ରାସ୍ତାରେ ଯାଉଥିବା ଲୋକମାନେ ଭାରି ଖୁସି ହୋଇ ତା' ମୁନିବକୁ ପଇସେ ଦୁଇ ପଇସା ଦିଅନ୍ତି ।

ସକାଳୁ ସଞ୍ଜ ପର୍ଯ୍ୟନ୍ତ ଏ ବାଳକ ଓ ତାହାର କୁକୁର ସହରର ରାସ୍ତାମାନଙ୍କରେ ବୁଲୁଥାଆନ୍ତି । କାହା ପାଖରୁ ପଇସା ଆଉ କାହା ପାଖରୁ ଖାଇବା ପଦାର୍ଥ ପାଆନ୍ତି । ରାତିରେ ଯେଉଁଠି ସେଇଠି ଆଶ୍ରା ନିଅନ୍ତି । କେଉଁଦିନ କାହାର ଦୁଆର ମୁହଁରେ ଶୁଅନ୍ତି ତ, ଆଉ କେଉଁଦିନ ଖୋଲା ପଡ଼ିଆରେ ଆକାଶ ତଳେ ଶୁଅନ୍ତି ।

ଦିନେ ରାତିରେ ଫାନ୍ ତା' ମୁନିବକୁ ରାସ୍ତା ପାଖରେ ଗୋଟାଏ ଝଙ୍କାଳିଆ ଗଛ ପାଖକୁ ନେଇଗଲା । ଗଛତଳେ ବସି ଦୁହେଁଯାକ ଖଣ୍ଡେ ରୁଟି କାମୁଡ଼ି କାମୁଡ଼ି ଖାଇଲେ । ତା'ପରେ ସେଠାରେ ଶୋଇପଡ଼ିଲେ ।

ଲୋ-ସାନ୍ ଗୋଟିଏ ସ୍ୱପ୍ନ ଦେଖିଲା । ସେ ଦେଖିଲା— ଗୋଟିଏ ସୁନ୍ଦରୀ ପରୀ ତା' ପାଖକୁ ଆସି କଅଁଳ ସ୍ୱରରେ କହୁଛି— ଲୋ-ସାନ୍, ଲୋ-ସାନ୍, ମୋତେ ଦେଖି ପାରୁଛୁ ?




ଲୋ-ସାନ୍ ସ୍ୱପ୍ନରେ ଦେଖିଲା – ଗୋଟିଏ ସୁନ୍ଦରୀ ପରୀ ତା'ପାଖକୁ ଆସିଲା

ଲୋ-ସାନ୍ ଦୁଃଖକରି କହିଲା – ହାୟ ହାୟ ! ମୁଁ ପରା ଅନ୍ଧ, ଦେଖିବି କିପରି ?

ପରୀ କହିଲା – ଦୁଃଖ କର ନା, ବାଳକ ! ମୁଁ ତୋର ସାହା ହେବି ।

ଲୋ-ସାନ୍ ମନରେ ଆଶା ବାନ୍ଧି ପଚାରିଲା – ସତେ କ'ଣ ମୁଁ ଦେଖି ପାରିବି ? ମୋତେ ଦେଖିବାର ଶକ୍ତି ଦେଇପାରିବ ?

ପରୀ – ନା, ତାହା ମୁଁ ଦେଇପାରିବି ନାହିଁ । କିନ୍ତୁ ତୁ ନିଜେ ଏପରି କିଛି କାମ କରିବୁ ଯାହାଦ୍ୱାରା ତୁ ଦେଖିବାର ଆଲୋକ ପାଇବୁ । ତୁ ଯେତେଥର ଭଲ କାମ କରିବୁ, ପ୍ରତି ଥର ତୋ ଆଖିକୁ ଟିକିଏ ଟିକିଏ ଅଲୋକ ଆସିବ । ଯେତେ ଥର ତୁ ଅନ୍ୟ ପ୍ରତି ସଦୟ ହେବୁ, ଅନ୍ୟର ଉପକାର କରିବୁ, ସେତେଥର ତୁ ଆଖିରେ ଟିକିଏ ଟିକିଏ ଅଧିକ ଭଲକରି ଦେଖିପାରିବୁ । ତୁ ନିର୍ଦ୍ଦୟ ହେଲେ ବା ସ୍ୱାର୍ଥପର ହେଲେ, ତୋ ଆଖିରୁ ଅଲୋକ ଅପସରି ଯିବ । ତୋତେ ଆହୁରି ବେଶି ଅନ୍ଧାର ଦିଶିବ ।

ପରୀ କୁଆଡ଼େ ଉଭେଇଗଲା । ଲୋ-ସାନ୍‌ର ନିଦ ଭାଙ୍ଗିଗଲା । ସୂର୍ଯ୍ୟର ଉଷୁମ କିରଣ ତା' ମୁହଁ ଉପରେ ଝଟକିଲା । ସେ ନିଜକୁ ଭାରି ସୁଖୀ ମନେକଲା । ଫାନ୍ ବି ଆଜି ସୁଖୀ । ସେ ତା' ମୁନିବର ହାତକୁ ଚାଟିଲା ଆଉ ଭୋ ଭୋ କରି ଭୁକିଲା ।

ଲୋ-ସାନ୍ କହିଲା— ଫାନ୍ ! ତୁ ମୋତେ ସାହାଯ୍ୟ କରିବୁ । ତୋ ବିନା ମୁଁ କିଛି କରିପାରିବି ନାହିଁ ।

ଲୋ-ସାନ୍ ଆଉ ତା' କୁକୁର ଏକାଠି ସଡ଼କରେ ଯିବାକୁ ଲାଗିଲେ । ଲୋ-ସାନ୍ ସ୍ୱପ୍ନରେ ଯେଉଁ ପରୀକୁ ଦେଖିଥିଲା, ସେହି ପରୀ କଥା ଭାବୁଥାଏ ।

ସଡ଼କରେ ଯାଉଁ ଯାଉଁ ସେମାନେ ଦେଖିଲେ ଜଣେ ବୁଢ଼ା ଭିକାରି ସଡ଼କ କଡ଼ରେ ବସିଛି । ତା' ପାଖଦେଇ ଗଲାବେଳକୁ ବୁଢ଼ା କହିଲା— କିଏ ଯାଉଛ ହୋ ! ଏ ଅନ୍ଧ ବୁଢ଼ାକୁ ଗୋଟିଏ ପଇସା ଦିଅ ।

ଲୋ-ସାନ୍ କହିଲା ମୁଁ ବି ଅନ୍ଧ । ମୁଁ ବି ଭିକାରି ।

ବୁଢ଼ା କହିଲା — ହେ ବାଳକ ! ମୁଁ ତୋଠାରୁ ଅଧିକ ହୀନକପାଳିଆ । ତୁ ଚାଲି ପାରୁଛୁ । ମୋର ଚାଲବୁଲ ହେବାର ଶକ୍ତି ନାହିଁ— ମୁଁ ଛୋଟା ।

ଲୋ-ସାନ୍ ବଡ଼ ଦୁଃଖିତ ହେଲା । ତା' ପାଖରେ ଅଛି କଅଣ ଯେ ସେ ବୁଢ଼ାକୁ ଦେବ ? ଗୋଟିଏ ମାତ୍ର ପଇସା ତା'ର ସମ୍ବଳ ଥିଲା । ସେ ଗୋଟାକ ବୁଢ଼ା ହାତକୁ ବଢ଼ାଇଦେଲା ।

ବୁଢ଼ା ଭିକାରି ଆଖି ଛଳଛଳ କରି ପଇସାଟି ତା ହାତରେ ନେଲା ।

ଚାହୁଁ ଚାହୁଁ ଲୋ-ସାନ୍‌ର ଆଖିରେ ଗୋଟିଏ ଦିବ୍ୟ ଆଲୋକ ରେଖା ଝଟକିଗଲା । ତା' ଆଖି ଟିକିଏ ଉଜ୍ଜ୍ୱଳ ଦେଖାଗଲା । ସେ ଅନ୍ଧକାର ଭିତର ଦେଇ ଆଲୋକର ଆଭା ଦେଖିପାରିଲା ।

ଲୋ-ସାନ୍ ତା' କୁକୁରକୁ କହିଲା— ଦେଖ୍ ଫାନ୍ ! ମୁଁ ଯେଉଁ ସ୍ୱପ୍ନ ଦେଖିଥିଲି ତାହା ସଫଳ ସ୍ୱପ୍ନ ।

ସେଦିନ ରାତିରେ ଲୋ-ସାନ୍ ଭିକାରି ନିବାସରେ ଶୋଇଲା । ସହର ସୀମାନ୍ତରେ ଗୋଟିଏ ଭଙ୍ଗା ଦଦରା ଘର । ଏହି ଘରେ ଭିକାରିମାନେ ଆଶ୍ରା ନିଅନ୍ତି । ଘରର ଗୋଟାଏ କୋଣରେ ଜଣେ ବୁଢ଼ୀ, ଅତି ବୁଢ଼ୀ ଭିକାରୁଣୀ ବସିଥାଏ । ତା'ର ଦିହପା ଭଲ ନ ଥାଏ । ଭୋକରେ ତା'ପେଟ ଜଳୁଥାଏ । ଲୋ-ସାନ୍ ପାଖରେ ଖଣ୍ଡେ ମାତ୍ର ଶୁଖିଲା ରୁଟି ଥିଲା । ଏ ଖଣ୍ଡିକ ସେ ରାତିରେ ଖାଇଥାନ୍ତା । କିନ୍ତୁ ବୁଢ଼ୀର ଦୁଃଖ ଦେଖି ତା'ର ହୃଦୟ ତରଳିଗଲା । ସେ ରୁଟି ଖଣ୍ଡକ ବୁଢ଼ୀ ହାତକୁ ବଢ଼ାଇଦେଲା । ବୁଢ଼ୀ କହିଲା— ରେ ପୁଅ ! ତୁ ମୋ ପ୍ରାଣ ବଞ୍ଚାଇଲୁ । ଆଶୀର୍ବାଦ କରୁଛି ତୁ ଦୀର୍ଘଜୀବୀ ହୁଅ ।

ଆଖିପିଛୁଳାକେ ଲୋ-ସାନ୍‌ର ଆଖିରେ ଗୋଟିଏ ଆଲୋକ ରେଖା ଝଟକିଲା । ଆଖିରେ ସେ ଆଉ ଟିକିଏ ଭଲକରି ଦେଖିପାରିଲା । ଲୋ-ସାନ୍ ବୁଢ଼ୀକୁ ପଚାରିଲା— ଆଜି କ'ଣ ଜହ୍ନରାତି ?

ବୁଢ଼ୀ କହିଲା— ହଁ ରେ ପୁଅ ! ଆଜି ପୂନେଇ ଜହ୍ନ ଆକାଶରେ ଶୋଭା ପାଉଛି ।

ଲୋ-ସାନ୍ ଭାରି ଖୁସି ହୋଇ କହିଲା— ହଁ ସତ ତ । ହେଇ ପରା ଆକାଶରେ ପୂନେଇଁ ଚାନ୍ଦ !

ଲୋ-ସାନ୍ ଖାଇବା କଥା ଭୁଲିଗଲା । ସେ ନିଦରେ ଶୋଇ ପଡ଼ିଲା ।

ପରଦିନ ସକାଳେ ଉଠି ଲୋ-ସାନ୍ ଓ ଫାନ୍ ଭୋକରେ ଅଥୟ ହେଲେ । ପାଖରେ କିଛି ଖାଇବାକୁ ନାହିଁ । କଅଣ କରିବେ ?

ଲୋ-ସାନ୍ କହିଲା— ଆସ ଫାନ୍ ! ସହରକୁ ଯିବା । କିଛି ଖାଇବା ପଦାର୍ଥ ମାଗି ଆଣିବା ।

ସହରକୁ ଯେଉଁ ରାସ୍ତା ପଡ଼ିଥାଏ ସେହି ରାସ୍ତାରେ ଦୁହେଁଯାକ ଗଲେ । ଗୋଟିଏ କୁକୁଡ଼ା କକ୍-କକ୍ କରି ରାସ୍ତାର ଏପାଖରୁ ସେପାଖକୁ ଦଉଡ଼ି ଯାଉଥିଲା । ଫାନ୍ ତୀରବେଗରେ ଦଉଡ଼ିଯାଇ ଝାମ୍ପମାରି କୁକୁଡ଼ାଟିକୁ ମାରିପକାଇଲା । କୁକୁଡ଼ାଟିକୁ ମୁହଁରେ ଧରି ତା' ମୁନିବ ପାଖକୁ ଆସିଲା ।

ଲୋ-ସାନ୍ ଭାରି ଖୁସି ହୋଇ କହିଲା— ଆଜି ମୋ ଭାଗ୍ୟ ଭଲ । ଏ କୁକୁଡ଼ାଟିକୁ ହାଟରେ ବିକିବି; ଯାହା ପଇସା ମିଳିବ ସେଥିରେ ଫାନ୍‌ର ଓ ମୋର କିଛିଦିନ ପାଇଁ ଅନ୍ନସଂସ୍ଥାନ ହୋଇ ପାରିବ ।

ଲୋ-ସାନ୍ ମଲା କୁକୁଡ଼ାଟିକୁ ତା' କୋଟ୍ ତଳେ ଲୁଚାଇ ଧରିଲା । ଫାନ୍ ତାକୁ ହାଟକୁ ବାଟ କଢ଼ାଇ ନେଲା । ହାଟରେ ଜଣେ ଲୋକ ତିନି ଟଙ୍କା ଦେଇ କୁକୁଡ଼ାଟି କିଣିନେଲା । ଲୋ-ସାନ୍ ଟଙ୍କାଗୁଡ଼ିକ ହାତରେ ନେଲାମାତ୍ରେ ତା' ଆଖି ଆଗରେ ଘୋର ଅନ୍ଧକାର ମାଡ଼ି ଆସିଲା । ସେ ଯେତିକି ଟିକିଏ ଦେଖି ପାରୁଥିଲା ସେତକ ବି ଆଉ ଦେଖିପାରିଲା ନାହିଁ । ଲୋ-ସାନ୍ ଦୁଃଖିତ ହୋଇ ଭାବିଲା— ହାୟ ! ମୁଁ ଗୋଟାଏ ଅନ୍ୟାୟ କାମ କରି ପକାଇଲି । ହାତେ ହାତେ ତା'ର ଫଳ ପାଇଲି । କୁକୁଡ଼ାଟା ମୋର ନୁହେଁ, ଏହାକୁ ମୁଁ ଚୋରାଇ ଆଣିଥିଲି ।

ଫାନ୍ ଯେଉଁଠାରେ କୁକୁଡ଼ାକୁ ଧରିଥିଲା ସେହି ସ୍ଥାନକୁ ଲୋ-ସାନ୍ ଫେରିଗଲା । ସେଠାରେ ପହଞ୍ଚି ସେ ପଚାରିଲା— ଆଜି ସକାଳେ କାହାର ଗୋଟିଏ କୁକୁଡ଼ା ହଜିଛି କି ?

ଜଣେ ଲୋକ କହିଲା— ହଁ; ମୋ ଭାଇର ଗୋଟିଏ କୁକୁଡ଼ା ହଜିଛି । ସେ ଭାରି ଗରିବ ଲୋକ । କୁକୁଡ଼ାଟି ପ୍ରତିଦିନ ଗୋଟାଏ ଲେଖାଏଁ ଅଣ୍ଡା ଦେଉଥିଲା । ଅଣ୍ଡା ବିକି ସେ ଚଳିଯାଉଥିଲା ।

ଲୋ-ସାନ୍ କହିଲା— ବଡ଼ ଦୁଃଖର କଥା, ମୋ କୁକୁର ଆଜି ସକାଳେ ଏ କୁକୁଡ଼ାଟିକୁ ମାରିପକାଇଛି । ମୁଁ ଏହାର ମୂଲ୍ୟ ଦେବାକୁ ଆସିଛି । ଏହି ଟଙ୍କା ନିଅ, ତମ ଭାଇଙ୍କୁ ଦେବ ।

ଲୋ-ସାନ୍ ଲୋକଟିକୁ ଟଙ୍କା ଦେଲା । ସାଙ୍ଗେ ସାଙ୍ଗେ ତା' ଆଖି ଆଗରେ ଅଲୋକର ଝଟକ ଖେଳିଗଲା । ସେ ଆଲୁଅ ଦେଖିପାରିଲା । ଖୁସି ହେଲେ ମଣିଷ ଯେପରି ହସେ, ଲୋ-ସାନ୍ ସେହିପରି ହସିଲା ।

ଲୋ-ସାନ୍‌ର ଜୀବନରେ ଗୋଟିଏ ନୂତନ ଅଧ୍ୟାୟ ଆରମ୍ଭ ହେଲା । ସେ ପରର ଉପକାର କରିବାକୁ ଲାଗିଲା । ତାହାଠାରୁ ଯେଉଁମାନେ ଅଧିକ ଦରିଦ୍ର, ସେମାନଙ୍କୁ ସେ ପାରୁପର୍ଯ୍ୟନ୍ତ ସାହାଯ୍ୟ କଲା । ଏହିପରି ମାସେ କଟିଗଲା ।

ଏବେ ଲୋ-ସାନ୍ ଦିନ ଓ ରାତି ବାରିପାରୁଛି । ଦିନବେଳେ ଗଛର କଳା ଛାଇ ସେ ଦେଖି ପାରୁଛି । ଫାନ୍ ତାକୁ ଆଉ ବାଟ ଦେଖାଇବା ଦରକାର ହେଉ ନାହିଁ ।

ଦିନେ ଲୋ-ସାନ୍ ଆଉ ଫାନ୍ ନଈକୂଳରେ ବସିଥାନ୍ତି । ପୂର୍ବଦିନ ରାତିରେ ଭାରି ବର୍ଷା ହୋଇଯାଇଛି । ନଈରେ ଅଥଳ ପାଣି ଦୁଇକୂଳ ମାଡ଼ି ବହିଚାଲିଛି । ହଠାତ୍ ଗୋଟାଏ ଆର୍ତ୍ତନାଦ ଶୁଭିଲା— ରକ୍ଷା କର, ରକ୍ଷା କର । ମୁଁ ବୁଡ଼ି ଯାଉଛି ।

ଲୋ-ସାନ୍ କଅଣ କରିବ କିଛି ଠିକ୍ କରି ପାରିଲା ନାହିଁ । ସେ ଭାବିଲା— ଫାନ୍ ତ ଭଲ ପହଁରି ଜାଣେ । ସେ ଚାଲାକ ଚତୁର । ସେ ଏ ଲୋକଟିକୁ ଉଦ୍ଧାର କରିପାରିବ । କିନ୍ତୁ ତାକୁ ରକ୍ଷା କରିବାକୁ ଯାଇ ମୋର ଏ ପ୍ରିୟ କୁକୁରଟି ଯଦି ବୁଡ଼ିମରେ, ତେବେ ମୋର ଅବସ୍ଥା କ'ଣ ହେବ ? ସେ ମୋର ଏକମାତ୍ର ସାଥୀ । ମୋ ସାଙ୍ଗରେ ନ ଥିଲେ ମୁଁ କଅଣ କରିବି ?

ମଣିଷଟି ପୁଣି ଡାକ ପକାଇଲା— କିଏ ଅଛି ହୋ ? ରକ୍ଷା କର, ରକ୍ଷା କର ।

ଲୋ-ସାନ୍ କହିଲା— ଫାନ୍ ! ଯା, ଏଥର ଯା, ମଣିଷଟିକୁ ଉଦ୍ଧାର କର । ଏହା କହି ଲୋ-ସାନ୍ କୁକୁରକୁ ପାଣି ଭିତରକୁ ପେଲି ଦେଲା ।



ଲୋ-ସାନ୍ କହିଲା – ଯା, ଫାନ୍ ଯା । ତାକୁ ରକ୍ଷା କର

କୁକୁର ମଣିଷ ପାଖକୁ ପହଁରି ପହଁରି ଗଲା ।

କିଛିକ୍ଷଣ ପରେ ଲୋ-ସାନ୍ ଦେଖିଲା ମଣିଷଟି ପାଣି ଭିତରୁ ଉଠି ଆସି କୂଳରେ ଭୁଷ୍‌କରି ପଡ଼ିଗଲା । ଲୋ-ସାନ୍ ତା'ପାଖକୁ ଦୌଡ଼ିଯାଇ ପଚାରିଲା – ଭଲ ଅଛ ତ ? ମୋ କୁକୁର କାହିଁ ?

ମଣିଷଟି କଥା କହିପାରୁ ନ ଥାଏ । ସେ ଅତି କଷ୍ଟରେ ମୃଦୁମନ୍ଦ ସ୍ୱରରେ କହିଲା – ହେ ବାଳକ ! କହିବି କଅଣ ? କୁକୁର ଆଉ ନାହିଁ । ମୁଁ ତାକୁ ଭିଡ଼ି ଓଟାରି ରକ୍ଷା କରିବାକୁ ଚେଷ୍ଟା କଲି । କିନ୍ତୁ ଆମେ ଦୁହେଁ ପରିଶ୍ରାନ୍ତ ହୋଇ ପଡ଼ିଥିଲୁଁ । ହେଇ, ସେ ତ ଦୂରରେ ପାଣି ଭିତରେ ଦିଶୁଛି ! ସେ ମୋ ପ୍ରାଣ ରକ୍ଷା କଲା । କିନ୍ତୁ ମୁଁ ତାକୁ ବଞ୍ଚାଇ ପାରିଲି ନାହିଁ ।

ଲୋ-ସାନ୍ ରଡ଼ି ଛାଡ଼ି ଭୂଇଁରେ କଚାଡ଼ି ପଡ଼ିଲା । ଅତି ଦୁଃଖରେ ଚିତ୍କାର କଲା – ହାୟ, ଫାନ୍ ! ତୁ ମୋର ଏକମାତ୍ର ସାଥୀ ଥିଲୁ । ତୋତେ ହରାଇ ମୁଁ କଅଣ କରିବି ?

ଲୋ-ସାନ୍ ମୁହଁ ତଳକୁ ପୋତି ଭୋ ଭୋ କାନ୍ଦିବାକୁ ଲାଗିଲା ।

ମଣିଷଟି ଉଠି ବସିଲା । ବାଳକକୁ ଦୁଇ ହାତରେ କୁଣ୍ଢେଇ ପକାଇ କହିଲା — କାନ୍ଦ ନା, କାନ୍ଦ ନା, ବାଳକ ! ଘରକୁ ଫେରିଯାଇ ତୋ ବାପାଙ୍କୁ କୁହ । ସେ ନିଶ୍ଚୟ ତୋ ପାଇଁ ଆଉ ଗୋଟିଏ କୁକୁର କିଣି ଦେବେ ।

ଲୋ-ସାନ୍ କହିଲା — ମୋର ଘରଦ୍ୱାର ନାହିଁ । ମୁଁ ଅନ୍ଧ । ମୋତେ ଯେତେବେଳେ ପାଞ୍ଚ ବର୍ଷ ହୋଇଥିଲା, ମୋ ବାପା ମୋତେ ଘରୁ ବାହାର କରିଦେଲେ । ମୋର ସାହାଭରସା କେହି ନାହିଁ । ଫାନ୍ ଥିଲା ମୋର ଏକମାତ୍ର ସାଥୀ । ମଣିଷଟି ଆଖି ଛଳ ଛଳ କରି କହିଲା — ଦେଖେଁ ବାଳକ ! ତୋ ମୁହଁ ଦେଖେଁ ।

ଲୋ-ସାନ୍ ମୁଣ୍ଡ ଟେକି ସେହି ମଣିଷକୁ ଅନାଇଲା । ସେ ଏକଦୃଷ୍ଟିରେ ମଣିଷକୁ ଚାହିଁଲା । ସେ ମଣିଷକୁ ଦେଖିପାରିଲା । ସେ ଏବେ ଆଉ ଅନ୍ଧ ନୁହେଁ । ସେ କୁକୁରକୁ ହରାଇଛି ସତ, କିନ୍ତୁ ସେ ଦୃଷ୍ଟିଶକ୍ତି ପାଇଛି ।

ମଣିଷଟି ଅତି କ୍ଷୀଣ କଣ୍ଠରେ ପଚାରିଲା — ତୋ ନାମ ଲୋ-ସାନ୍ ନୁହେଁ କି ?

ବାଳକ କହିଲା — ହଁ, ଲୋ-ସାନ୍ ମୋ ନାମ । ତମେ ମୋ ନାମ ଜାଣିଲ କିପରି ?

ମଣିଷଟି କହିଲା — ଲୋ-ସାନ୍ ! ମୋ ପୁଅ ! ମୋତେ କ୍ଷମାକର । ମୁଁ ତୋର ବାପ । ତୋ ପ୍ରତି ନିଷ୍ଠୁର ହୋଇ ତୋତେ ଘରୁ ତଡ଼ିଦେଲି । ଏବେ ମୋ ସାଙ୍ଗରେ ଘରକୁ ଆ । ତୋତେ ଆଉ ଗୋଟିଏ କୁକୁର କିଣିଦେବି ।

ଲୋ-ସାନ୍ କ୍ରୋଧ ସମ୍ବରଣ କରି ପାରିଲା ନାହିଁ । ସେ ଭାବିଲା — ଏହି ତ ମୋର ନିଷ୍ଠୁର ବାପା । ବାପାଙ୍କ ଯୋଗୁଁ ମୋର ସବୁ ଦୁଃଖ ଦୁର୍ଦ୍ଦଶା । ତେବେ ବି ସେ ମୋର ବାପା । ମୁଁ ତାଙ୍କ ପୁଅ ।

ଏହା ଭାବି ଲୋ-ସାନ୍ କହିଲା— ବାପା ! ତମକୁ କ୍ଷମା କଲି । ତମ ସାଙ୍ଗରେ ଘରକୁ ଫେରିଯିବି । କିନ୍ତୁ ଦେଖ ବାପା ! ମୁଁ ଏବେ ଦେଖିପାରୁଛି । ମୁଁ ଆଉ ଅନ୍ଧ ନୁହେଁ ।

ବାପା ଆଶ୍ଚର୍ଯ୍ୟ ହୋଇଗଲେ । ବାପ ପୁଅ ଦୁହେଁ ଘରମୁହାଁ ହୋଇ ଧୀରେ ଧୀରେ ଚାଲିଲେ । ଯାଉଁ ଯାଉଁ ଲୋ-ସାନ୍ ତା' ସ୍ୱପ୍ନ କଥା ବାପାଙ୍କୁ କହିଲା ।

ଲୋ-ସାନ୍‌ର ଏବେ ଆଉ ଗୋଟିଏ କୁକୁର ଅଛି । ତା' ନାମ ମିନ୍ ।

ଲୋ-ସାନ୍ ତା' ଘରେ ସୁଖ ଶାନ୍ତିରେ ଅଛି ସତ, ତେବେ ବି ସେ ତାର ବିଶ୍ୱସ୍ତ ଫାନ୍ କଥା ଭୁଲି ପାରୁନାହିଁ ।

ଉ-ଫେଙ୍ଗ୍‌ର ଗପ ଏହିଠାରେ ଶେଷ ହେଲା । ଗପ ଶୁଣିସାରି କାହ୍ନୁ ଓ ଜହ୍ନମାମୁ ଶୋଇବାକୁ ଗଲେ । ଉ-ଫେଙ୍ଗ୍ ଦିନସାରା ବିଲରେ କାମ କରି ଥକିପଡ଼ିଥିଲା । ବିଛଣାରେ ପଡ଼ିବାମାତ୍ରେ ସେ ନିଦରେ ଘୁଙ୍ଗୁଡ଼ି ମାରିଲା ।

ସକାଳୁ ଉଠି କାହ୍ନୁ ଓ ଜହ୍ନମାମୁ ବାହୁଡ଼ା ଯାତ୍ରା ପାଇଁ ସଜବାଜ ହେଲେ । ଉ-ଫେଙ୍ଗ୍ ଓ ତାର କୁଟୁମ୍ବଙ୍କ ଠାରୁ ବିଦାୟ ନେଇ ଜହ୍ନମାମୁ ଠେକୁଆ ପିଠିରେ ବସିଲେ । କାହ୍ନୁ ଜହ୍ନମାମୁଙ୍କ କୋଳରେ ବସିଲା । ତିନିହେଁଯାକ ଆକାଶରେ ଉଡ଼ି ଉଡ଼ି ଗଲେ ।

ଜହ୍ନମାମୁ କାହ୍ନୁକୁ ତା' ଘର ପଛପାଖ ଅଗଣାରେ ଓହ୍ଲାଇ ଦେଇ ତାଙ୍କ ରାଇଜକୁ ଉଡ଼ିଗଲେ ।

